ଓଡ଼ିଶା ମାଧ୍ୟମିକ ଶିକ୍ଷାପରିଷଦଙ୍କଦ୍ୱାରା ୭ମ ଶ୍ରେଣୀର ପାଠ୍ୟପୁସ୍ତକରୂପେ
ମନୋନୀତ

# ସାହିତ୍ୟ ପ୍ରସୂନ

## ( GENERAL READER )

( ସପ୍ତମ ଶ୍ରେଣୀ ନିମନ୍ତେ )

ସଂକଳୟିତା
ଅଧ୍ୟାପକ ଶ୍ରୀ ଚନ୍ଦ୍ରମଣି ବେହେରା

ନୂତନ ମୁଦ୍ରଣ
୧୯୬୭

ପ୍ରକାଶକ
ଜୟ ଭାରତୀ
ବ୍ରହ୍ମପୁର : କଟକ

ମୂଲ୍ୟ ଏକ ଟଙ୍କା

# ସୂଚୀପତ୍ର

## — ଗଦ୍ୟ ବିଭାଗ —

## —ପଦ୍ୟ ବିଭାଗ—

# ମୃତ୍ୟୁବିଜୟୀ ବାଳକ

ମହର୍ଷି ବାଜଶ୍ରବାଙ୍କର ବିଶ୍ୱଜିତ୍ ଯଜ୍ଞପୀଠରେ ବହୁ ଦୂରଦୂରାନ୍ତରରୁ ଆସି ଅତିଥି ଅଭ୍ୟାଗତମାନେ ଉପସ୍ଥିତ ହୋଇଅଛନ୍ତି । ଋଷି ପ୍ରଫୁଲ୍ଲମନରେ ଗୋଟି ଗୋଟି କରି ନିଜର ସମସ୍ତ ସମ୍ପତ୍ତି ଅପରକୁ ଦାନ କରିବାରେ ଲାଗିଛନ୍ତି । କାରଣ ଏହି ଯଜ୍ଞର ନିୟମ ହେଉଛି ଯେ, ଯଜ୍ଞକର୍ତ୍ତା ନିଜର ସର୍ବସ୍ୱ ଦାନ କରିବେ । ଜଣ ଜଣ କରି ଅଭ୍ୟାଗତଙ୍କର ଅର୍ଚ୍ଚନା କରି ଋଷି ନିଜର ଭୂମି, ଧେନୁ, ସୁବର୍ଣ୍ଣ ପ୍ରଭୃତି ସମସ୍ତ ଦାନ କରୁଛନ୍ତି ଏବଂ ଅଭ୍ୟାଗତମାନେ ଋଷିଙ୍କୁ ଯଜ୍ଞଫଳ ଲାଭ କରିବାର ଆଶୀର୍ବାଦ ଦେଇ ନିଜ ନିଜ ସ୍ଥାନକୁ ପ୍ରତ୍ୟାଗମନ କରୁଛନ୍ତି ।

ଯଜ୍ଞ ପ୍ରାୟ ଶେଷ ହୋଇଆସୁଛି । ଋଷି ତାଙ୍କର ସମ୍ପତ୍ତି ଦାନ କରିସାରିଛନ୍ତି । ବର୍ତ୍ତମାନ ଋଷି ପୁରୋହିତମାନଙ୍କୁ ଦଳେ ଗାଈ ଆଣି ଦାନ କରୁଛନ୍ତି । କିନ୍ତୁ ଗାଈଗୁଡ଼ିକ ଯେ ଅତି ରୁଗ୍ଣ ଓ ଜୀର୍ଣ୍ଣଶୀର୍ଣ୍ଣ ! ବାଜଶ୍ରବାଙ୍କ ପୁତ୍ର ବାଳକ ନଚିକେତା ଦୂରସ୍ଥିତିରେ ସମସ୍ତ ଲକ୍ଷ୍ୟ କରୁଥିଲେ । ବର୍ତ୍ତମାନ ବାପା ଏହି ଅକର୍ମଣ୍ୟ ଓ ରୁଗ୍ଣ ଗାଈଗୁଡ଼ିକୁ ଦକ୍ଷିଣା ଦେଉଥିବାର ଦେଖି ସେ ବିସ୍ମିତ ଓ ମର୍ମାହତ ହେଲେ । ବାପା ତାଙ୍କର ଏ କଅଣ କରୁଛନ୍ତି ? ସ୍ୱାସ୍ଥ୍ୟହୀନ ରୁଗ୍ଣ ଓ ଜରାଜୀର୍ଣ୍ଣ ଏଇ ଗାଈସବୁ ଦକ୍ଷିଣା ଦେଇ ବାପା

କଅଣ ପୁଣ୍ୟ ଅର୍ଜ୍ଜନ କରିବାକୁ ଚାହାନ୍ତି ? ନଚିକେତାଙ୍କ ମନରେ ଶୁଦ୍ଧ ବୁଦ୍ଧି ଉଦୟ ହେଲା । ପିତାଙ୍କ ନିକଟରେ ଉପସ୍ଥିତ ହୋଇ ସେ ପ୍ରଶ୍ନ କଲେ, "ବାପା, ବିଶ୍ୱଜିତ ଯଜ୍ଞରେ ସର୍ବସ୍ୱ ତ ଦାନ କଲେ; କହନ୍ତୁ, ମତେ କାହାକୁ ଦାନ କଲେ ?" ବାଜଶ୍ରବା ପୁତ୍ରର ଏହି ପ୍ରଶ୍ନ ପ୍ରତି ଧ୍ୟାନ ଦେଇନାହାନ୍ତି । କିଛି ସମୟ ପରେ ହି ଶିଶୁବାର ପିତାଙ୍କ ନିକଟକୁ ଯାଇ ପୁଣି ସେହି ପ୍ରଶ୍ନ ପଚାରିଲେ; କିନ୍ତୁ ଯଜ୍ଞକାର୍ଯ୍ୟରେ ବ୍ୟସ୍ତ ଥିବାରୁ ପୁତ୍ରର ଏହିପରି ଏକ ପ୍ରଶ୍ନର ଉତ୍ତର ନ ଦେଇ ସେ ନିଜ କାର୍ଯ୍ୟରେ ଲାଗିଲେ ।

ବାଳକ ନଚିକେତା ଅନୁଭବ କଲେ ଯେ ପିତାଙ୍କର ବିଶ୍ୱଜିତ୍ ଯଜ୍ଞ ନିଶ୍ଚୟ ନିଷ୍ଫଳ ହେବ । କାରଣ ସ୍ନେହର ମାୟାରେ ଅନ୍ଧ ହୋଇ ସେ ନିଜର ପୁତ୍ରକୁ ଅପରକୁ ଦାନକରିବାକୁ କୁଣ୍ଠିତ ହେଉଛନ୍ତି । ତେଣୁ ସେ ପୁନର୍ବାର ପିତାଙ୍କ ନିକଟକୁ ଯାଇ କହିଲେ, "ବାପା, ବିଶ୍ୱଜିତ୍ ଯଜ୍ଞର ଫଳ ପାଇବାକୁ ଇଚ୍ଛା ଥିଲେ ମୋତେ ମଧ୍ୟ ଅନ୍ୟକୁ ଦାନ କରନ୍ତୁ । କହନ୍ତୁ, ମୋତେ କାହାକୁ ଦାନ କଲେ," ଋଷି ବାଜଶ୍ରବା ଏଥର ଅତ୍ୟନ୍ତ ବିରକ୍ତ ହୋଇ କହିଲେ, "ଯମକୁ, ତୋତେ ଯମକୁ ଦେଲି ।"

ଆଶ୍ଚର୍ଯ୍ୟ କଥା ବାଳକ ନଚିକେତା ଅତ୍ୟନ୍ତ ପ୍ରଫୁଲ୍ଲଚିତ୍ତରେ ଯମାଳୟକୁ ଯିବାକୁ ପ୍ରସ୍ତୁତ ହେଲେ । ବାଜଶ୍ରବାଙ୍କର ଯଜ୍ଞ ଶେଷ ହେବା ପରେ ଋଷି ବିଶ୍ରାମ କରିବାକୁ ଯାଉଛନ୍ତି, ଏହି ସମୟରେ ନଚିକେତା ଘରୁ ବାହାରି ଯାଉଥିବା ଦେଖି ତାର କାରଣ ପଚାରିଲେ । ନଚିକେତା କହିଲେ, "ବାପା ! ଆପଣଙ୍କ ସତ୍ୟରକ୍ଷା ପାଇଁ ମୋତେ ଯମଙ୍କ ନିକଟକୁ ଯିବାକୁ ହେବ । ଆପଣ ମୋତେ ଯମକୁ ଦାନ କରିଛନ୍ତି ।"

ଋଷିଙ୍କର ନିଜ କହିବା କଥା ମନେ ପଡ଼ିଗଲା । ସେ ସ୍ନେହରେ କହିଲେ, "ବତ୍ସ ! ତାହା କଅଣ ମୋର ଅନ୍ତରର କଥା ? ମୁଁ ବିରକ୍ତିରେ ସେପରି କହିଦେଇଥିଲି ସିନା ।

ନଚିକେତା କହିଲେ, "ଆପଣ କ୍ଷୁବ୍ଧ ହୋଇ ନିଜର ସତ୍ୟରକ୍ଷା କରିବାକୁ କୁଣ୍ଠା ପ୍ରକାଶ କରନ୍ତୁ ନାହିଁ । ପୁଣି ସବୁ ସମ୍ପତ୍ତିଠାରୁ ଆପଣ ମୋତେ ଅଧିକ ପ୍ରିୟ ବୋଲି ମନେ କରନ୍ତି । ତେଣୁ ମୁଁ ଆପଣଙ୍କ ଶ୍ରେଷ୍ଠ ଧନ । ମୋତେ ଦାନ ନ କଲେ ବିଶ୍ୱଜିତ୍ ଯଜ୍ଞ ତ ଅପୂର୍ଣ୍ଣ ରହିବ !"

ଋଷି ଏତେବେଳେ ନଚିକେତାଙ୍କ ମନର ଭାବ ବୁଝିଲେ । ବାଳକ ହେଲେ ମଧ୍ୟ ନଚିକେତା ଯେଉଁ ଅପୂର୍ବ ସାହସ ଓ ସତ୍ୟନିଷ୍ଠା ଦେଖାଇଛନ୍ତି, ତାହା ମହାଜ୍ଞାନୀ ନିକଟରେ ମଧ୍ୟ ସହଜରେ ଦେଖାଯାଏ ନାହିଁ । ଏଥିରେ ଋଷିଙ୍କ ମନରେ ଟିକିଏ ଗର୍ବ ହେଲା, ପୁଣି ସ୍ନେହର ପୁତ୍ରକୁ ଯମଙ୍କୁ ଦେବାର ଚିନ୍ତାରେ ଟିକିଏ ଦୁଃଖ ମଧ୍ୟ ହେଲା । କିନ୍ତୁ ନଚିକେତା ଅଟଳ ଅଚଳ । କଠୋର ସତ୍ୟରକ୍ଷା ପାଇଁ ଋଷି ବାଧ୍ୟ ହୋଇ ନଚିକେତାଙ୍କୁ ବିଦାୟ ଦେଲେ ।

ଯମପୁରର ରୁଦ୍ଧଦ୍ୱାର ନିକଟରେ ତିନି ଦିନ ଅପେକ୍ଷା କଲା ପରେ ନଚିକେତା ଯମଙ୍କ ଦର୍ଶନ ପାଇଲେ । ଏହି ତିନୋଟି ଦିନ ତାଙ୍କର ଅନାହାରରେ ଏବଂ ଅନିଦ୍ରାରେ କଟିଥିଲେ ମଧ୍ୟ ଋଷିକୁମାର ବିଚଳିତ ହୋଇ ନ ଥିଲେ । ମନରେ ଉତ୍ସାହ ଓ ବିଶ୍ୱାସ ପୂର୍ବପରି ଦୃଢ଼ । ସେ କେବଳ ଗୋଟିଏ କଥା ମନେ ରଖିଛନ୍ତି ଯେ ପିତାଙ୍କ ଯଜ୍ଞଫଳର ପୂର୍ଣ୍ଣତା ପାଇଁ ସେ ଯମଙ୍କ ନିକଟକୁ ଯିବେ । ଧର୍ମରାଜ ଯମ ତାଙ୍କୁ ଗ୍ରହଣ କରିବେ କିପରି ? ବାଳକ ନଚିକେତା କେବଳ

ଯିବାକୁ ଗୃହିଁଲେ ତ ଯଥେଷ୍ଟ ହେଲ ନାହିଁ । ସେ ପର୍ଯ୍ୟନ୍ତ ତାଙ୍କର କାଳ ପୂର୍ଣ ନାହିଁ; ତେଣୁ ଯମପୁରର ଦ୍ୱାର ତାଙ୍କ ପାଇଁ ଉନ୍ମୁକ୍ତ ହୋଇପାରିବ ନାହିଁ । କିନ୍ତୁ ଦ୍ୱାରଦେଶରେ ତିନି ଦିନ ଅନାହାରରେ ଅପେକ୍ଷା କରିଥିବା ଏହି ବାଳକ ଅତିଥିଟିର ସତ୍କାର ତ ଆବଶ୍ୟକ । ଶେଷରେ ଯମ ନିଜେ ଆସି ପହଞ୍ଚିଲେ । ନଚିକେତା ଯମଙ୍କ ଦର୍ଶନ ପାଇ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ଯମ ମଧ୍ୟ ଏ ଅପୂର୍ବ ନିର୍ଭୀକ ଓ ତେଜସ୍ୱୀ ବାଳକର ସାହସ ଓ ବିଶ୍ୱାସକୁ ମନେ ମନେ ବହୁ ପ୍ରଶଂସା କଲେ । ସ୍ନେହରେ ତାଙ୍କର ହୃଦୟ ବିଗଳିତ ହେଲା । ସେ କହିଲେ "ଋଷିକୁମାର ! ତୁମେ ମୋର ଅତିଥି । ସତ୍ୟରକ୍ଷା ପାଇଁ ତୁମର ଦୃଢ଼ ପ୍ରତିଜ୍ଞା ଦେଖି ମୁଁ ଅତିଶୟ ପ୍ରୀତ ହୋଇଅଛି । ତୁମେ ମୋର ଦ୍ୱାରରେ ତିନି ଦିନ ଉପବାସ ରହି କଟାଇଛ, ଏଥିରେ ମୁଁ ଅତ୍ୟନ୍ତ ବ୍ୟଥିତ । ବର୍ତ୍ତମାନ ତୁମେ ତିନୋଟି ବରପ୍ରାର୍ଥନା କର ।" ନଚିକେତା ଅତ୍ୟନ୍ତ ବିନୀତ ଭାବରେ କହିଲେ,



[ ନଚିକେତା ଓ ଧର୍ମରାଜ ]

"ମୋର ପିତା ମୋତେ ନେଇ ଅତ୍ୟନ୍ତ ସନ୍ତାପ ଭୋଗ କରୁଛନ୍ତି । ତାଙ୍କର ସେହି ଦୁଃଖ ଦୂର କରନ୍ତୁ ଏବଂ ମୁଁ ତାଙ୍କ ନିକଟରେ

ଉପସ୍ଥିତ ହେଲେ ସେ ଯେପରି ମୋତେ ପୂର୍ବପରି ସ୍ନେହରେ ଗ୍ରହଣ କରିବେ, ତାର ବ୍ୟବସ୍ଥା କରନ୍ତୁ ।'' ଯମରାଜ ଆନନ୍ଦରେ ଏହି ବର ପ୍ରଦାନ କଲେ ଏବଂ ନଚିକେତାଙ୍କର ପିତୃଭକ୍ତି ଦେଖି ଅତ୍ୟନ୍ତ ପ୍ରୀତ ହେଲେ ।

ନଚିକେତା ଦ୍ୱିତୀୟ ବର ପ୍ରାର୍ଥନା କଲେ, "ଧର୍ମରାଜ ! ସଂସାର ଲୋକଙ୍କର ଦୁଃଖ, ଦୁର୍ଦ୍ଦଶା, ପାପ ଓ ଶୋକ ପ୍ରଭୃତି ଦେଖି ମୋର ମନ ଅତିଶୟ ବ୍ୟାକୁଳ । କି ମନ୍ତ୍ର ସାଧନ କଲେ କିମ୍ବା କେଉଁ ଯଜ୍ଞ ଅନୁଷ୍ଠାନ କଲେ ସେମାନେ ଏଥିରୁ ମୁକ୍ତି ପାଇବେ, ତାହା ମୋତେ କହନ୍ତୁ । ମୁଁ ତାହା ପ୍ରଚାର କରିବି ଏବଂ ତଦ୍ଦ୍ୱାରା ଆପଣଙ୍କର ଯଶ ପ୍ରଚାରିତ ହେବ ।"

ଏ ପ୍ରଶ୍ନ ଶୁଣି ଯମରାଜ ଅତ୍ୟନ୍ତ ବିସ୍ମିତ ହେଲେ । ଧନ୍ୟ ଏହି ବାଳକ ! ଏହି ବୟସରେ ମଧ୍ୟ ସଂସାରର ପାପ, ଦୁଃଖ, ଶୋକ ଏହାଙ୍କ ମନକୁ ଏପରି ବିଚଳିତ କରୁଅଛି । ପ୍ରକାଶ୍ୟରେ କହିଲେ, "ନଚିକେତା ! ତୁମର ଏହି ପ୍ରଶ୍ନରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ । ସଂସାରର ପାପ, ଅନ୍ୟାୟ ପାଇଁ ମୃତ୍ୟୁ ପରେ ଦଣ୍ଡର ବ୍ୟବସ୍ଥା କରିବା ମୋର କର୍ତ୍ତବ୍ୟ, କିନ୍ତୁ ସେ କର୍ତ୍ତବ୍ୟ କି କଠୋର ଏବଂ ମର୍ମନ୍ତୁଦ, ତାହା ମୋତେ ହିଁ ଜଣା । ତେଣୁ ଏହି ଉପାୟଟି ଶିକ୍ଷା-ଦେବାରେ ମୋର ଟିକେହେଲେ ଆପତ୍ତି ନାହିଁ । କିନ୍ତୁ ତୁମେ ବାଳକ ମାତ୍ର । ତୁମେ କଣ ତାହା ସ୍ମରଣ ରଖିପାରିବ ?

ନଚିକେତା ଅତ୍ୟନ୍ତ ଆଗ୍ରହ ଓ ବିନୟରେ ପ୍ରାର୍ଥନା କଲେ, "ଧର୍ମରାଜ ! ଦୟାକରି ମୋତେ କହନ୍ତୁ, ମୁଁ ମନୋଯୋଗ ସହକାରେ ଶ୍ରବଣ କରି ଅବଶ୍ୟ ସ୍ମରଣ ରଖିପାରିବି ବୋଲି ଆଶା କରୁଛି ।''

ଉପ୍ତରେ ଯମ ଏକ ନୂତନ ମନ୍ତ୍ରର ସାଧନା ଏବଂ ଯଜ୍ଞବିଧି ବିଷୟରେ କହିଲେ । ବାଳକ ନଚିକେତା ଅପୂର୍ବ ଆଗ୍ରହ ଓ ମନୋଯୋଗ ସହିତ ତାହା ଶ୍ରବଣ କଲେ । ଏଥର ଆସିଲା ପରୀକ୍ଷାର ସମୟ । ଯମରାଜାଙ୍କ ମନରେ ଅଭ୍ରାନ୍ତ ବିସ୍ମୟ ଜଗାଇ ନଚିକେତା ସମସ୍ତ ବିଷୟ ଠିକ୍ ଠିକ୍ କହିଦେଇ ଗଲେ । ଯମରାଜ ଅତ୍ୟନ୍ତ ଆନନ୍ଦରେ ନିଜ କଣ୍ଠରୁ ରତ୍ନମାଳା କାଢ଼ି ନଚିକେତାଙ୍କ ଗଳାରେ ପିନ୍ଧାଇଦେଲେ । ଏହିପରି ଏକ ଅସାଧାରଣ ଶିଷ୍ୟ ଲାଭକରି ତାଙ୍କର ମନ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲା ।

ଅତ୍ୟନ୍ତ ସନ୍ତୋଷରେ ଯମ କହିଲେ, "ବତ୍ସ ! ଏପର୍ଯ୍ୟନ୍ତ ତୃତୀୟ ବର ତୁମେ ମାଗି ନାହଁ । ନିଜ ପାଇଁ କାମନା କରିବାର କଅଣ କିଛି ନାହିଁ ? ସ୍ୱର୍ଗର ଅପୂର୍ବ ଭୋଗବିଳାସ, ପୃଥିବୀର ଅଖଣ୍ଡ ଆଧିପତ୍ୟ ଓ ଆଶ୍ଚର୍ଯ୍ୟ ସାମଗ୍ରୀ ଯାହା ଚାହିଁବ, ତୁମକୁ ମୋର ଅଦେୟ ହୋଇ କିଛି ନାହିଁ । ପ୍ରାର୍ଥନା କର ।"

କିନ୍ତୁ ନଚିକେତାଙ୍କ ମନ ଏହି ସଂସାରର ଅସ୍ଥାୟୀ ସୁଖ ଚାହୁଁ ନ ଥିଲା । ଯମରାଜାଙ୍କ ପରି ଜ୍ଞାନୀ ଗୁରୁଙ୍କୁ ପାଇ ସେ କଅଣ କେବଳ ସ୍ୱର୍ଗ, ରାଜ୍ୟ ଆଉ ଧନ କାମନା କରିବେ ? ମୁହୂର୍ତ୍ତକ ମଧ୍ୟରେ ନିଜର ମନ ସ୍ଥିରକରି ନଚିକେତା କହିଲେ, "ଗୁରୁଦେବ ! ଆପଣଙ୍କ ପ୍ରସାଦରୁ ମୋର ଦୁଇଟି କାମନା ପୂର୍ଣ୍ଣ ହୋଇଅଛି । ସଂସାରର ସୁଖ ପ୍ରାର୍ଥନା କରି ମୋର କଅଣ ହେବ ? ଆପଣ ଯଦି ସନ୍ତୁଷ୍ଟ ହୋଇଅଛନ୍ତି, ତେବେ ମୋତେ ମୃତ୍ୟୁଞ୍ଜୟୀ ଆତ୍ମଜ୍ଞାନ ପ୍ରଦାନ କରନ୍ତୁ ।"

ମୃତ୍ୟୁଞ୍ଜୟୀ ଆତ୍ମଜ୍ଞାନ ! ଆତ୍ମାର ବିଷୟ ଅତି ଜଟିଳ ଏବଂ ରହସ୍ୟପୂର୍ଣ୍ଣ । ମହାଜ୍ଞାନୀ ଏବଂ ମହର୍ଷିମାନେ ଯୁଗ ଯୁଗ ଚେଷ୍ଟା

ଓ ଶତ୍ରାକର ତାହା ଜାଣିବାକୁ ସମର୍ଥ ହୁଅନ୍ତି ନାହିଁ । ନଚିକେତା କୋମଳମତି ବାଳକ । ତାଙ୍କୁ ଏ ଗଭୀର ଜ୍ଞାନ ପ୍ରଦାନ କରାଯିବ କିପରି ? ଯମରାଜ ଟିକିଏ ଚିନ୍ତିତ ହେଲେ ପୁଣି ନଚିକେତାଙ୍କୁ ଅନ୍ୟ ବର ପ୍ରାର୍ଥନା କରିବାକୁ କହିଲେ କିନ୍ତୁ ନଚିକେତାଙ୍କ ମନରେ ଅନ୍ୟ କୌଣସି କାମନା ନାହିଁ । ଶେଷରେ ଯମରାଜ ଅତିଶୟ ଆନନ୍ଦରେ ନଚିକେତାଙ୍କୁ ଆତ୍ମଜ୍ଞାନର ଗୂଢ଼ ତତ୍ତ୍ୱ ବିଷୟରେ କହିଲେ । ନଚିକେତା ଆତ୍ମଜ୍ଞାନର ଅଧିକାରୀ ହୋଇ ଗୁରୁଦେବଙ୍କ ଚରଣରେ ଭକ୍ତି-ପ୍ରଣତି ଜ୍ଞାପନ କଲେ । ଯମରାଜଙ୍କ ସ୍ନେହ ତ ଅବର୍ଣ୍ଣନୀୟ । ଏପରି ଶିଷ୍ୟ ପାଇ ସେ ନିଜକୁ ଧନ୍ୟ ମନେକଲେ ଏବଂ ସମସ୍ତ ମନ୍ତ୍ରର ସାଧନା କରିବାକୁ ଉପଦେଶ ଦେଇ ଆଲିଙ୍ଗନପୂର୍ବକ ଆଶୀର୍ବାଦ କରି ନଚିକେତାଙ୍କୁ ବିଦାୟ ଦେଲେ ।

## ପ୍ରଶ୍ନ

୧ । କେଉଁ ଗୁଣାବଳୀରେ ନଚିକେତା ଆତ୍ମଜ୍ଞାନର ଅଧିକାରୀ ହୋଇପାରିଥିଲେ ଲେଖ ।

୨ । ଯମ ଓ ନଚିକେତାଙ୍କ କଥୋପକଥନର ସାରାଂଶ ନିଜ ଭାଷାରେ ବର୍ଣ୍ଣନା କର ।

୩ । ପ୍ରସଙ୍ଗ ନିର୍ଦ୍ଦେଶପୂର୍ବକ ସରଳାର୍ଥ ଲେଖ:—

ଆପଣ ବିଜ୍ଞ ହୋଇ ନିଜର·····ଆପଣଙ୍କର ଶ୍ରେଷ୍ଠ ଧନ ।

୪ । ବିଶେଷ୍ୟକୁ ବିଶେଷଣ ଓ ବିଶେଷଣକୁ ବିଶେଷ୍ୟ ପଦରେ ପରିଣତ କର:—

ବର୍ଣ୍ଣନୀୟ, ବିଜୟୀ, ଚିନ୍ତା, ଅପୂର୍ଣ୍ଣ, ସନ୍ତୁଷ୍ଟ, ଅସ୍ଥିର, ବିସ୍ମିତ ।

୫ । ଅର୍ଥ ଲେଖି ବାକ୍ୟରେ ପ୍ରୟୋଗ କର:—

ମୃତ୍ୟୁଜୟୀ, ଅବର୍ଣ୍ଣନୀୟ, ବିସ୍ମୟ, ମର୍ମନ୍ତୁଦ, ମନସ୍ତାପ ।

# ବ୍ୟାସକବି ଫକୀରମୋହନ

ଓଡ଼ିଶାର ସାହିତ୍ୟାକାଶରେ ଯେଉଁ ଜ୍ୟୋତିଷ୍କଗଣ ନିଜ ପ୍ରତିଭାର ସମୁଜ୍ଜ୍ୱଳ ଜ୍ୟୋତି ବିକିରଣ କରି ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିଛନ୍ତି, ଫକୀରମୋହନ ସେନାପତି ସେମାନଙ୍କ ମଧ୍ୟରୁ ଅନ୍ୟତମ। ଯେଉଁ ସମୟରେ ଓଡ଼ିଆ ଭାଷାର ସତ୍ତା ଲୋପକରି ବଙ୍ଗଳା ଭାଷାକୁ ଓଡ଼ିଶାରେ ପ୍ରଚଳିତ କରିବାକୁ ଚକ୍ରାନ୍ତ ଓ ପ୍ରବଳ ଉଦ୍ୟମ ହୋଇଥିଲା, ସେ ସମୟରେ ସଂଗ୍ରାମର ସେନାପତି ଭଳି ଫକୀର-ମୋହନଙ୍କର ଅକ୍ଳାନ୍ତ ଚେଷ୍ଟା ଓ ନେତୃତ୍ୱ ଓଡ଼ିଆ ଭାଷାକୁ ମୃତ୍ୟୁମୁଖରୁ ରକ୍ଷା କରିଥିଲା। ଫକୀର-ମୋହନଙ୍କ ବ୍ୟତୀତ ଅନ୍ୟ କେତେକ ଜାତିପ୍ରେମୀ କର୍ମୀ ଓ ସାହିତ୍ୟିକ ମଧ୍ୟ ଓଡ଼ିଆ ଭାଷାର ସଂରକ୍ଷଣ ଓ ବିକାଶ ପାଇଁ ଜୀବନ-ବ୍ୟାପୀ ସାଧନା କରିଥିଲେ। ମାତୃଭାଷାର ସଂରକ୍ଷକ ଭାବରେ କେବଳ ନୁହେଁ, ଓଡ଼ିଆ ଭାଷାର ଜଣେ ବିଶିଷ୍ଟ ସ୍ରଷ୍ଟା ଭାବରେ ମଧ୍ୟ ଫକୀରମୋହନ ଆଜି ଆମର ନମସ୍ୟ ଓ ସ୍ମରଣୀୟ।



[ ଫକୀରମୋହନ ]

ଓଡ଼ିଆ କଥା-ସାହିତ୍ୟର ସେ ଆଦିସ୍ରଷ୍ଟା ବା ଜନକ କହିଲେ ଅତ୍ୟୁକ୍ତି ହେବ ନାହିଁ।

୧୮୪୩ ମସିହା ଜାନୁଆରୀ ମାସ ମକର ସଂକ୍ରାନ୍ତି ଶୁକ୍ରବାର ଦିନ ବାଲେଶ୍ୱର ଜିଲାର ମଲ୍ଲିକାଶପୁର ଗ୍ରାମରେ ଓଡ଼ିଆ ସାହିତ୍ୟର ଏହି ସ୍ରଷ୍ଟା ଫକୀରମୋହନ ସେନାପତିଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ଲକ୍ଷ୍ମଣଚରଣ ସେନାପତି ଏବଂ ମାତାଙ୍କର ନାମ ତୁଳସୀ ଦେଈ । ଅତି ଶୈଶବରୁ ତାଙ୍କର ପିତୃମାତୃବିୟୋଗ ଘଟିଥିଲା । ତେଣୁ ଫକୀରମୋହନ ତାଙ୍କର ପିତାମହୀ କୁଚିଲା ଦେଈଙ୍କର ତତ୍ତ୍ୱାବଧାନରେ ଲାଳିତ ପାଳିତ ହୋଇଥିଲେ । ବାଲ୍ୟକାଳରେ ଫକୀରମୋହନ ନାନାପ୍ରକାର ଜଞ୍ଜାଳରେ ନିଷ୍ପେଷିତ ହୋଇଥିବାରୁ ତାଙ୍କୁ ଅର୍ଥାଗମର ଉପାୟ ଅନ୍ୱେଷଣ କରିବାକୁ ପଡ଼ିଲା । ଏଣୁ ସେ ତତ୍କାଳୀନ ପ୍ରଚଳିତ ଅଖାଳ ସିଲେଇ କର୍ମରେ ଠିକାଦାର ରୂପେ ନିଯୁକ୍ତ ହେଲେ; କିନ୍ତୁ ଅଳ୍ପ ଦିନ ପରେ ତାଙ୍କର ଭାଗ୍ୟାକାଶରେ ବିରାଟ ପରିବର୍ତ୍ତନର ସୂତ୍ରପାତ ହେଲା । ଅନ୍ୟ କୌଣସି କାର୍ଯ୍ୟରେ ନିଯୁକ୍ତ ନ ହୋଇ ସେ ବାରବାଟୀ ସ୍କୁଲରେ ପୁଣି ଅଧ୍ୟୟନ କଲେ । କପର୍ଦ୍ଦକଶୂନ୍ୟ ଯୁବକ ପକ୍ଷରେ ଏ ସାହସ ଓ ନିଷ୍ଠା କିଛି କମ୍ ଗୌରବର ବସ୍ତୁ ନୁହେଁ । ବାରବାଟୀରେ ଅଳ୍ପକାଳ ପାଇଁ ଶିକ୍ଷାଲାଭ କରିଥିଲେ ସୁଦ୍ଧା ସେ ନିଜର ସୌଜନ୍ୟ ଶାଳୀନତା ଦ୍ୱାରା ଶିକ୍ଷକମାନଙ୍କର ପ୍ରୀତିଭାଜନ ହୋଇପାରିଥିଲେ । ତେଣୁ ଦାରିଦ୍ର୍ୟର କଷାଘାତରେ ବିଦ୍ୟାଶିକ୍ଷାରୁ ବିରତ ହୋଇଥିଲେ ସୁଦ୍ଧା ସେହି ସ୍କୁଲର ତତ୍କାଳୀନ ତତ୍ତ୍ୱାବଧାରକଙ୍କଦ୍ୱାରା ସେଠାରେ ସେ ତୃତୀୟ ଶିକ୍ଷକ ପଦରେ ନିଯୁକ୍ତ ହେଲେ ।

ବାରବାଟୀ ସ୍କୁଲରେ ଦୁଇ ବର୍ଷ ଅଧ୍ୟୟନ ଓ ଅଧ୍ୟାପନା ପରେ ସେ ବାଲେଶ୍ୱରସ୍ଥିତ ମିଶନାରୀ ସ୍କୁଲରେ ମାସିକ ଦଶ ଟଙ୍କା ବେତନରେ ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତ ହୋଇ ସ୍ୱୀୟ ପାଣ୍ଡିତ୍ୟ,

ବିଦ୍ୟା ଏବଂ ପ୍ରତିଭା ବଳରେ ତତ୍କାଳୀନ ଜିଲା କଲେକ୍ଟର ବୀମ୍ସ୍ ସାହେବଙ୍କର ଅତ୍ୟନ୍ତ ଶ୍ରଦ୍ଧାଭାଜନ ହୋଇପାରିଥିଲେ । ଏହି ସାହେବ "ତାଙ୍କର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର" ବୋଲି ଫକୀରମୋହନ ତାଙ୍କର 'ଆତ୍ମଜୀବନଚରିତ'ରେ ବର୍ଣ୍ଣନା କରିଅଛନ୍ତି । ପରେ ବୀମ୍ସ୍ ସାହେବଙ୍କର ଅଶେଷ ସହାନୁଭୂତି ଫଳରେ ଫକୀରମୋହନ ମାସିକ ୧୦୦ ଟଙ୍କା ବେତନରେ ନୀଳଗିରିରେ ଦେୱାନ ପଦରେ ନିଯୁକ୍ତ ହୋଇଥିଲେ । ନୀଳଗିରିରୁ ଡମପଡ଼ା, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡ଼ା, କେନ୍ଦୁଝର, ପ୍ରଭୃତିରେ ଦେୱାନ ଏବଂ ମେନେଜରୀ କାର୍ଯ୍ୟରେ ନିଯୁକ୍ତ ହୋଇ ବିଶେଷ ଅଭିଜ୍ଞତା ଘେନି ସେ ପୁନର୍ବାର ଡମପଡ଼ାରେ ଦ୍ୱିତୀୟ ଥର ଦେୱାନ ପଦରେ ନିଯୁକ୍ତ ହୋଇଥିଲେ । ୧୮୯୬ ମସିହାରେ ଫକୀରମୋହନ ଡମପଡ଼ା ଦେୱାନଗିରି ତ୍ୟାଗ କରି କଟକରେ କେତେ ବର୍ଷ ଅବସ୍ଥାନ କଲି ପରେ ପୁନର୍ବାର ଜନ୍ମସ୍ଥାନ ବାଲେଶ୍ୱରରେ ଜୀବନର ଅବଶିଷ୍ଟ କାଳ ଅତିବାହିତ କରିଥିଲେ ।

ଓଡ଼ିଆ ଭାଷାର ସମୃଦ୍ଧି କଲ୍ୟାଣ-କାମନା ଫକୀରମୋହନଙ୍କର ସର୍ବପ୍ରଥମ ଉଦ୍ଦେଶ୍ୟ ଥିଲା । ଏଣୁ ଓଡ଼ିଆ ଲିପିରେ ଛାପାଖାନାର ଅଭାବ ଦେଖି ସେ ବାଲେଶ୍ୱର ମିଶିନାରୀ ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ବାଲେଶ୍ୱରରେ ଏକ ଛାପାଖାନା ବସାଇଥିଲେ । ଏହି ଛାପାଖାନାଦ୍ୱାରା ବହୁ ଓଡ଼ିଆ ପୁସ୍ତକ ପୁସ୍ତିକା ପ୍ରକାଶିତ ହୋଇ ଓଡ଼ିଆ ଭାଷା ତଥା ସାହିତ୍ୟର ପ୍ରଭୂତ କଲ୍ୟାଣ ସାଧନ କରିଥିଲା । ଫକୀରମୋହନ 'ଛ' ମାଣ ଆଠଗୁଣ୍ଠ' 'ମାମୁଁ' 'ଲଛମା' ଓ 'ପ୍ରାୟଶ୍ଚିତ' ପ୍ରଭୃତି ଉପନ୍ୟାସ, 'ଅବସରବାସରେ' 'ବୌଦ୍ଧାବତାର' ପ୍ରଭୃତି କାବ୍ୟକବିତା ଓ ବହୁ କ୍ଷୁଦ୍ର ଗଳ୍ପ ରଚନା

କରି ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରି ଯାଇଛନ୍ତି । ସେ ସଂସ୍କୃତ ରାମାୟଣ, ମହାଭାରତ ଓ ଉପନିଷଦର ଅନୁବାଦ ମଧ୍ୟ ଓଡ଼ିଆ ଭାଷାରେ କରିଛନ୍ତି । ମୂଳତଃ ତାଙ୍କର ଲେଖମାନଃସୃତ ଉପନ୍ୟାସ, କ୍ଷୁଦ୍ର ଗଳ୍ପ ଓ କାବ୍ୟକବିତା ଓଡ଼ିଆଭାଷାର ମୂଳଭିତ୍ତିକୁ ସୁଦୃଢ଼, ବଳିଷ୍ଠ ଏବଂ ପରିବର୍ଦ୍ଧିତ କରି ତାଙ୍କର 'ବ୍ୟାସକବି' ନାମର ସାର୍ଥକତା ପ୍ରତିପାଦନ କରିଅଛି । ତାଙ୍କର ଗଳ୍ପ ଓ ଉପନ୍ୟାସ-ମାନଙ୍କରେ ମାନବ-ହୃଦୟର ସୂକ୍ଷ୍ମ ଅନୁଭୂତି ଜୀବନ୍ତଭାବେ ଅଭିବ୍ୟକ୍ତି ଲାଭ କରିଛି । ସେଗୁଡ଼ିକ ପାଠକଲେ ଜଣାଯାଏ ଯେ ଫକୀରମୋହନ ଅତି ଗଭୀର ଭାବରେ ମନୁଷ୍ୟ ଚରିତ୍ର ଅଧ୍ୟୟନ କରିପାରିଥିଲେ ।

ଜୀବନର ଶେଷ ଦଶାରେ ଫକୀରମୋହନ ବାରମ୍ବାର ଦାରୁଣ ବ୍ୟାଧିଗ୍ରସ୍ତ ହୋଇ ଶଯ୍ୟାଶାୟୀ ହୋଇଥିଲେ । ଆଶ୍ଚର୍ଯ୍ୟର କଥା ଏହି ଦାରୁଣ ଦୁଃଖଦୁର୍ଦ୍ଦଶା ଭିତରେ ମଧ୍ୟ ସେ କିଛିକାଳ ସାହିତ୍ୟସେବାରୁ ବିରତ ହୋଇ ନ ଥିଲେ । ଯେତେବେଳେ ସେ ସ୍ୱଜନ-ପରିତ୍ୟକ୍ତ ହୋଇଥିଲେହେଁ ଓଡ଼ିଶାର ସାହିତ୍ୟସେବକଗଣ ତାଙ୍କର ରୋଗଶଯ୍ୟା ନିକଟରେ ଉପସ୍ଥିତ ହୋଇ ତାଙ୍କ ସେବା ଶୁଶ୍ରୂଷା କରିବା ସଙ୍ଗେ ସଙ୍ଗେ ଅଶେଷ ସ୍ନେହ ଓ ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ ।

ଫକୀରମୋହନ ସେନାପତି ୧୯୧୮ ମସିହା ଜୁନ ମାସ ୧୪ ତାରିଖରେ ତାଙ୍କର ପ୍ରିୟ ନିବାସ 'ଶାନ୍ତିକାନନ'ରେ ଓଡ଼ିଆଜାତିକୁ ଦୁଃଖସାଗରରେ ଭସାଇଦେଇ ଇହଲୀଳା ସମ୍ବରଣ କଲେ । କିନ୍ତୁ ମର୍ତ୍ତ୍ୟ ଶରୀରର ଅବସାନ ହେଲେହେଁ ତାଙ୍କର ଅମରବାଣୀ ଓଡ଼ିଆ ଜାତିକୁ ଚିରଦିନ ପାଇଁ ଉଦ୍‌ବୁଦ୍ଧ କରୁଥିବ ଓ ତାଙ୍କର ସୃଷ୍ଟିସମ୍ପଦ ସାରସ୍ୱତ ମନ୍ଦିରରେ ଚିରଦିନ ଅମ୍ଳାନ ହୋଇ ରହିବ । ଯେଉଁ ଶାନ୍ତିକାନନରେ କବି ତାଙ୍କର ଶେଷ ଜୀବନ କଟାଇଥିଲେ,

ତାହା ଆଜି ବହୁ ଦର୍ଶକ ଓ ବାଣୀସେବକଙ୍କ ନିକଟରେ ଏକ ପୁଣ୍ୟପୀଠରୂପେ ସମ୍ମାନିତ ଏବଂ ପ୍ରକୃତରେ ସମଗ୍ର ଓଡ଼ିଆଜାତିର ତାହା ଗୋଟିଏ ସାରସ୍ୱତ ତୀର୍ଥ ।

## ପ୍ରଶ୍ନ

୧ । ଏହି ପ୍ରବନ୍ଧର ଅନୁସରଣରେ ଫକୀରମୋହନଙ୍କ ଜୀବନୀ ନିଜ ଭାଷାରେ ଲେଖ ।

୨ । ଓଡ଼ିଆ ଭାଷାର ସଂରକ୍ଷଣ ଓ ଓଡ଼ିଆ ସାହିତ୍ୟର ବିକାଶସାଧନ ପାଇଁ ଫକୀରମୋହନ କଅଣ କରିଯାଇଛନ୍ତି ଲେଖ ।

୩ । ସରଳାର୍ଥ ଲେଖ—

(ଯେଉଁ ଶାନ୍ତକାନନରେ କବି···ତାହା ଗୋଟିଏ ସାରସ୍ୱତ ତୀର୍ଥ

୪ । ବିପରୀତ ଶବ୍ଦ ଲେଖ—

ସୂକ୍ଷ୍ମ, ସାର୍ଥକ, ଅମ୍ଳାନ, ଉନ୍ନତି, ସୁରକ୍ଷା, ଶ୍ରଦ୍ଧା ।

---

# ଆମ ପର୍ବପର୍ବାଣି

ଜୀବନରେ ଆନନ୍ଦ ଆହରଣ କରିବାକୁ ମନୁଷ୍ୟ ସର୍ବଦା ପ୍ରୟାସୀ । ତେଣୁ ଜୀବନର କ୍ଳାନ୍ତ ମୁହୂର୍ତ୍ତକୁ ସରସ ସୁନ୍ଦର କରିବା ପାଇଁ ସେ ନାନାପ୍ରକାର ଉତ୍ସବର ଆୟୋଜନ କରିଥାଏ । ବ୍ୟକ୍ତିଗତ ବା ପାରିବାରିକ ଜୀବନରେ କେବଳ ନୁହେଁ, ସାମାଜିକ ଜୀବନରେ ମଧ୍ୟ ସଂଘବଦ୍ଧଭାବରେ କେତେକ ଉତ୍ସବରେ ସେ ଯୋଗଦାନ କରେ । ସେଥିପାଇଁ ପ୍ରତି ଦେଶ ଓ ପ୍ରତି ଜାତି ମଧ୍ୟରେ ନାନାପ୍ରକାର ପର୍ବପର୍ବାଣିର ସୃଷ୍ଟି । ଖ୍ରୀଷ୍ଟିୟାନ୍‌ମାନେ ବଡ଼ଦିନ ଓ ଇଷ୍ଟର୍, ମୁସଲମାନମାନେ ମହରମ୍, ଇଦ ଓ ବକ୍‌ରିଦ୍ ପ୍ରଭୃତି ପର୍ବଗୁଡ଼ିକ ମହା ଆଡ଼ମ୍ବରରେ ପାଳନ କରିଥାନ୍ତି । ଆମ ହିନ୍ଦୁସମାଜରେ ମଧ୍ୟ

ବହୁ ପ୍ରକାର ପର୍ବପର୍ବାଣି ପାଳିତ ହୁଏ । ଓଡ଼ିଶା ପ୍ରତି ଦୃଷ୍ଟିପାତ କଲେ ଏହାର ସତ୍ୟତା ସମ୍ବନ୍ଧରେ ଜଣାପିବ । ଓଡ଼ିଶାରେ ପାଳିତ ହେଉଥିବା ପର୍ବପର୍ବାଣି ମଧ୍ୟରୁ ରଜ, ରଥଯାତ୍ରା, ଦଶହରା, କୁମାର-ପୂର୍ଣ୍ଣିମା, ବୋଇତବନ୍ଦାଣ, ପ୍ରଥମାଷ୍ଟମୀ, ପୌଷପୂର୍ଣ୍ଣିମା, ମକର-ସଂକ୍ରାନ୍ତି, ଶିବରାତ୍ରି, ଦୋଳପୂର୍ଣ୍ଣିମା ଓ ବିଷୁବସଂକ୍ରାନ୍ତି ପ୍ରଭୃତି ପ୍ରଧାନ । ଏହି ପର୍ବଗୁଡ଼ିକ ପାଳିବା ମୂଳରେ ଆନନ୍ଦ ଉପଭୋଗ କରିବା ଲକ୍ଷ ଥିଲେହେଁ ଲୋକମନରେ ଧର୍ମଭାବ ସୃଷ୍ଟି କରିବାର ଉଦ୍ଦେଶ୍ୟ ମଧ୍ୟ ନିହିତ । ତେଣୁ ଅଧିକାଂଶ ପର୍ବପର୍ବାଣି ଆମର ଆରାଧ୍ୟ ଦେବ-ଦେବୀଙ୍କର ପୂଜା ବିଧାନ ସହ ସଂପୃକ୍ତ । ପୁରୀର ଜଗନ୍ନାଥ ମନ୍ଦିରରେ ମଧ୍ୟ ବିଭିନ୍ନ ପର୍ବପର୍ବାଣି ଦେବତାଙ୍କ ନିକଟରେ ଅନୁଷ୍ଠିତ ହୋଇଥାଏ । ଆନନ୍ଦ ଦେବା, ଧର୍ମଭାବ ସୃଷ୍ଟି କରିବା ବ୍ୟତୀତ ପର୍ବପର୍ବାଣି ଆମର ସାମାଜିକ ଜୀବନକୁ ମଧ୍ୟ ସଂଗଠିତ କରିଥାଏ ।

ଭାରତବର୍ଷ ଗୋଟିଏ ପଲ୍ଲୀବହୁଳ ଦେଶ । ଆମ ଓଡ଼ିଶାରେ ମଧ୍ୟ ଅଧିକାଂଶ ଲୋକ ପଲ୍ଲୀରେ ବାସ କରନ୍ତି । କୃଷିକର୍ମ କରି କୃଷକ-ଜୀବନ ଯାପନ କରିବା ଆମର ଅଭ୍ୟାସ । କ୍ଷେତରେ କିପରି ଭଲ ଫଳ ଫଳିବ, ସେଥିଲାଗି କୃଷକ ସର୍ବଦା ଚିନ୍ତିତ ଥାଏ । ଭଲ ଗଛ ସକାଶେ ବସୁଧାମାତାଙ୍କର ପୂଜା, ଭଲ ବର୍ଷା ସକାଶେ ଇନ୍ଦ୍ରଙ୍କର ପୂଜା, ଭଲ ଫଳ ସକାଶେ ଲକ୍ଷ୍ମୀଙ୍କର ପୂଜା ସେ ଯଥାବିଧି ପାଳନ କରେ । ଏହି ଉତ୍ସବ ଦିନଗୁଡ଼ିକରେ ଦେବ-ଦେବୀଙ୍କର ଆରାଧନା କରି ପିଠାପଣା ଖାଇ କୃଷକ ଆନନ୍ଦରେ ଦିନ କଟାଏ ।

କୃଷି ସହିତ ଆମର ସମ୍ପର୍କ ଥିବାରୁ ଅକ୍ଷୟତୃତୀୟା ଦିନଠାରୁହିଁ ଆମର ପର୍ବପର୍ବାଣି ଆରମ୍ଭ ହୋଇଥାଏ । ଏହି ଦିନ

ଚାଷୀ ବନ୍ଧନ ଅନୁକୂଳ କରେ । ତା' ପରେ ପରେ ରଜପର୍ବ ଆସିଯାଏ । ଏହା ଭୂଦେବୀଙ୍କର ଉତ୍ସବ । ଛୁଆପିଲାଠାରୁ ଆରମ୍ଭ କରି ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ଏ ପର୍ବ ମହାଆନନ୍ଦରେ ପାଳନ କରନ୍ତି । ଗାଁଗଣ୍ଡା ହସଖୁସି ଏବଂ ଖେଳକୌତୁକରେ ମୁଖରିତ ହୋଇଉଠେ । ଘରେ ଘରେ ପିଠାପଣା ହୁଏ । ଚାଷୀ ତିନି ଦିନ ପର୍ଯ୍ୟନ୍ତ ଜମିକୁ ହଳ ନିଏ ନାହିଁ । ଏ ଉତ୍ସବ ଯେ ଥରେ ଉପଭୋଗ କରିଛି, ସେ ଆଉ ଜୀବନରେ ତାହା ଭୁଲିପାରିବ ନାହିଁ ।

ଆଷାଢ଼ ମାସରେ ରଥଯାତ୍ରା ହୁଏ । ଉତ୍କଳରେ ଅଧିଷ୍ଠିତ ଦେବ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ରଥରେ ବିଜେ କରନ୍ତି ଜଗନ୍ନାଥ ହେଉଛନ୍ତି ଆମର ଶ୍ରେଷ୍ଠ ଦେବତା । ଏହି ରଥଯାତ୍ରା ଓଡ଼ିଶାରେ ସର୍ବତ୍ର ପାଳିତ ହୁଏ, କିନ୍ତୁ ପୁରୀରେ ପାଳିତ ହେଉଥିବା ରଥଯାତ୍ରା ସର୍ବୋତ୍କୃଷ୍ଟ । ଏହି ଯାତ୍ରା ଦେଖିବା ପାଇଁ ଓଡ଼ିଶା ଓ ଓଡ଼ିଶା ବାହାରୁ ବହୁଲୋକଙ୍କର ସମାଗମ ହୋଇଥାଏ ।

ବର୍ଷାକାଳରେ ଗ୍ରାମଦେବୀଙ୍କ ପୂଜା ଖୁବ୍ ଉପଭୋଗ୍ୟ । ଗ୍ରାମବାସୀମାନେ ମିଳିମିଶି ଚାନ୍ଦା କରି ଗାଁ ଦେବୀଙ୍କର ଉପାସନା କରନ୍ତି । ଘଣ୍ଟ, ଶଙ୍ଖ, ଢୋଲ, ମହୁରୀ ପ୍ରଭୃତି ବାଦ୍ୟଶବ୍ଦରେ ଆକାଶ କମ୍ପି ଉଠେ । କ୍ଷେତକୁ ଶସ୍ୟଶ୍ୟାମଳ କରି ଶତ୍ରୁ ଦାଉରୁ ରକ୍ଷା କରିବା ପାଇଁ ପୂଜକ ଦେବୀଙ୍କୁ ପ୍ରାର୍ଥନା କରେ ।

ଏହା ପରେ ପରେ ଆସେ ଦଶହରା ପର୍ବ । ସହର ବଜାରରେ ଏ ଉତ୍ସବ ମହାସମାରୋହରେ ପାଳିତ ହୁଏ । ପ୍ରତି ସାହିରେ ଦେବୀଙ୍କୁ ମେଢ଼ରେ ବସାଇ ଆଡ଼ମ୍ବର ସହକାରେ ପୂଜା କରାଯାଏ । ସହରରେ ତ ପଇସାପତ୍ର ବା ଉପକରଣର ଅଭାବ ନାହିଁ । ଗରିବ ଚାଷୀ

ପକ୍ଷରେ ଏସବୁ ଅସମ୍ଭବ ହୋଇଉଠେ । ଏଣୁ ଗୃହୀ ତା' ନିଜ ଘରେ ବିନା ଆଡ଼ମ୍ବରରେ ଦେବଙ୍କର ଆରାଧନା କରିଥାଏ ।

କାର୍ତ୍ତିକ ମାସ ଗୋଟାକଯାକ ପର୍ବପର୍ବାଣିରେ ପୂର୍ଣ୍ଣ । ଦୀପାବଳୀ ଅମାବାସ୍ୟା, ଅଁଳା ନବମୀ, ବଡ଼ଓଷା, ବୋଇତବନ୍ଦାଣ ପ୍ରଭୃତି ଉତ୍ସବରେ ମଧ୍ୟ ନାନା ଦେବଦେବୀଙ୍କର ପୂଜାବିଧାନ ନିହିତ । ମାର୍ଗଶିର ମାସ ଆସିଗଲେ ଗୃହୀର ଧାନ ଅମଳ କରିବା କଥା । ଲକ୍ଷ୍ମୀଙ୍କୁ ବନ୍ଦାଇ ସେ ଘରକୁ ଆଣିବ । ଏଣୁ ମାର୍ଗଶିର ମାସର ପ୍ରତି ଗୁରୁବାରରେ ମାଣବସା ଉତ୍ସବ ପାଳିତ ହୁଏ । ଗୃହୀ ଧାନକୁ ମା' ଲକ୍ଷ୍ମୀ ବୋଲି ଭାବି ତାଙ୍କର ପୂଜା କରେ । ଏ ସମୟରେ ପ୍ରଥମାଷ୍ଟମୀ ପର୍ବ ବଡ଼ ଆନନ୍ଦରେ ପାଳନ କରାଯାଏ ।

ପୌଷମାସ ବେଳକୁ ଧାନକଟା ଶେଷ ହୋଇଯାଇଥାଏ । ଗୃହୀ ହାଇ ମା' ଲକ୍ଷ୍ମୀଙ୍କୁ ଆଣି ଘରେ ରଖିଥାଏ । ତେଣୁ ତାର କିଛି ଚିନ୍ତା ନ ଥାଏ । ଏଣିକି ମଉଜ ମଜଲିସ୍ କରିବା କଥା । ପୌଷ-ପୂର୍ଣ୍ଣିମା ଦିନଟି ଏକ ଉତ୍ସବର ଦିନ । ମାଛ, ମାଂସ, ପିଠାପଣାରେ ଏହି ଉତ୍ସବ ପାଳିତ ହୁଏ । ନ ଥିଲା ଲୋକ ଘର ଘର ବୁଲି ଧାନ ମାଗନ୍ତି । ଦୁଃଖୀ ରଙ୍କୀ ସମସ୍ତେ ନୂଆ ଲୁଗା ପିନ୍ଧି ବେଶଭୂଷା ହୋଇ ଖେଳକୌତୁକରେ ଦିନ କାଟନ୍ତି ।

ମାଘମାସରେ ମକର ଯାତ୍ରା ପଡ଼େ । ଅରୁଆ ଚାଉଳରେ ଘିଅ ଗୁଡ଼, ନଡ଼ିଆ, ପାଚିଲା କଦଳୀ, ରାଶି ପ୍ରଭୃତି ପକାଇ ମକର ଚାଉଳ ତିଆରି ହୁଏ । ମା ମାନେ ସକାଳୁ ଉଠି ଘରଦ୍ୱାର ଚିତା ଦେଇ ପିଠା କରି ବସନ୍ତି । ଚକୁଳି, ମଣ୍ଡା, ଆରିସା, କାକରା ପ୍ରଭୃତି ପିଠା ଖାଇ ସମସ୍ତେ ଆନନ୍ଦରେ ଦିନ କଟାନ୍ତି । ସକାଳୁ ଉଠି ଗାଧୁଆ ପାଧୁଆ କରି ଲୋକମାନେ ମକର ବସନ୍ତି । ଏ ଉତ୍ସବ ଓଡ଼ିଶାର ପ୍ରତିପଲ୍ଲୀରେ ପାଳିତ ହୁଏ । ଶୀତ କଷ୍ଟରୁ ରକ୍ଷା କରିଥିବାରୁ କୃଷକ

ମାଘପୂର୍ଣ୍ଣିମା ଦିନ ଅଗ୍ନିଦେବତାଙ୍କର ପୂଜା କରେ । ଏହାକୁ 'ଅଗ୍ନି-ଉତ୍ସବ' କହନ୍ତି ।

ଫଗୁଣ ମାସରେ ଦୋଳଯାତ୍ରା ଉତ୍କଳର ପୁରପଲ୍ଲୀରେ ଏକ ଜାତୀୟ ପର୍ବ । ଗ୍ରାମବାସୀମାନେ ଫଗୁଖେଳରେ ମତ୍ତ ହୋଇ ରାଧା-ଗୋବିନ୍ଦଙ୍କର ପୂଜା କରନ୍ତି । ସମାଗତ ପାଞ୍ଚ ଦିନ ପର୍ଯ୍ୟନ୍ତ ଏ ଉତ୍ସବ ପାଳନ କରାଯାଏ । ନାନା ପ୍ରକାର ବାଣ ଫୁଟେ । ନାଟଯାତ୍ରାରେ ପୁରପଲ୍ଲୀ କୋଳାହଳପୂର୍ଣ୍ଣ ହୋଇଥାଏ । ଏ ସମୟରେ ଗାଁ ଗଣ୍ଡାର ଆନନ୍ଦ-ଉତ୍ସବ ବିଷୟ କହିଲେ ନ ସରେ ।

ଆମର ପର୍ବପର୍ବାଣି ପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ ଚନ୍ଦ୍ରାପୂର୍ଣ୍ଣିମା, କୁମାରପୂର୍ଣ୍ଣିମା ପ୍ରଭୃତି କେତେକ ପର୍ବ କେବଳ ଆନନ୍ଦ ଉତ୍ସବ ପାଇଁ ଉଦ୍ଦିଷ୍ଟ । ଅନ୍ୟ କେତେକ ପର୍ବପର୍ବାଣିରେ ଦେବଦେବୀଙ୍କର ପୂଜା ହୁଏ । ମନୁଷ୍ୟ ଜୀବନ କେବଳ କଠୋର କର୍ମ ସକାଶେ ଅଭିପ୍ରେତ ନୁହେଁ, ଶାରୀରିକ ପରିଶ୍ରମ ସାଙ୍ଗକୁ ଆମୋଦପ୍ରମୋଦର ବ୍ୟବସ୍ଥା ଅତ୍ୟନ୍ତ ହିତକର । ଏଣୁ କର୍ମକଠୋର ଜୀବନକୁ ସରସ ସୁନ୍ଦର କରିବା ପାଇଁ ଆମର ପର୍ବପର୍ବାଣିଗୁଡ଼ିକ ପ୍ରଧାନ ସହାୟକ ।

## ପ୍ରଶ୍ନ

୧ । ଓଡ଼ିଶାରେ ପାଳିତ ହେଉଥିବା ପର୍ବପର୍ବାଣି ମଧ୍ୟରେ କେଉଁଟି ତୁମକୁ ଅଧିକ ସୁଖ ଲଗେ ଓ କାହିଁକି ?

୨ । ପ୍ରସଙ୍ଗ ନିର୍ଦ୍ଦେଶ କରି ସରଳାର୍ଥ ଲେଖ ।

ଆନନ୍ଦ ଦେବା······ସଂଗଠିତ କରିଥାଏ ।

୩ । ବିଶେଷ୍ୟକୁ ବିଶେଷଣ ଓ ବିଶେଷଣକୁ ବିଶେଷ୍ୟ ପଦରେ ପରିଣତ କର—

ଆରାଧ, ଅନୁଷ୍ଠିତ, ଶରୀର, ଉତ୍କୃଷ୍ଟ, ମତ୍ତ, ସଙ୍ଗଠନ ।

# ସମବାୟ ସମିତି

ଅନ୍ୟୂନ ଦଶ ଜଣ ଲୋକ ମିଳିମିଶି ନିଜର ତଥା ଜନସାଧାରଣଙ୍କର ଉପକାର ସାଧନ ପାଇଁ କୌଣସି ଅନୁଷ୍ଠାନ ଗଠନ କଲେ ତାହା ସମବାୟ ସମିତି ନାମରେ ଅଭିହିତ ହୁଏ । ଆମ ଦେଶରେ ବହୁ କାଳରୁ ପ୍ରଚଳିତ ଏକାନ୍ନବର୍ତ୍ତୀ ପରିବାର ମୂଳରେ ଏହି ସମବାୟ ନୀତି ହିଁ ନିହିତ ଥିଲା । ଖାଲି ସେତିକି ନୁହେଁ ଗ୍ରାମ, ଗୋଷ୍ଠୀ, ଜାତି ଓ ସମାଜ ମଧ୍ୟ ଏହି ସମବାୟ ନୀତି ଉପରେ ପ୍ରତିଷ୍ଠିତ । ତେବେ ସମବାୟ କହିଲେ ଆମେ ଯାହା ବୁଝୁ, ତାହା ଗୋଟିଏ ନିର୍ଦ୍ଦିଷ୍ଟ ନିୟମରେ ଗଢ଼ା ଅନୁଷ୍ଠାନ ।

ପ୍ରଥମେ ଆମ ଦେଶରେ କୃଷକମାନଙ୍କୁ ଅତ୍ୟଧିକ ଲାଭଖୋରୀ ସାହୁକାର ବା ମହାଜନମାନଙ୍କ କବଳରୁ ରକ୍ଷା କରିବା ପାଇଁ ସମବାୟ ଋଣ ସମିତିମାନ ଗଢ଼ା ଯାଇଥିଲା । ଆମ ଦେଶରେ ୧୯୦୪ ମସିହାରେ ପ୍ରଥମେ ଏକ ସମବାୟ ଆନ୍ଦୋଳନର ସୂତ୍ରପାତ ହେଲା । ତା'ପରେ ୧୯୧୨ ମସିହାରେ ଭାରତୀୟ ସମବାୟ ଆଇନ ପ୍ରଣୟନ କରାଯାଇ ବାଧ୍ୟବାଧକ ଭାବରେ ସମବାୟ ସମିତିମାନ ରେଜିଷ୍ଟ୍ରି କରାଗଲା ।

ଆମର ଏହି ଓଡ଼ିଶା ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ପ୍ରାୟ ତିନି ହଜାରରୁ ଊର୍ଦ୍ଧ୍ୱ 'ଋଣ ସମବାୟ ସମିତି' ସ୍ଥାପିତ ହୋଇସାରିଛି ଓ ପ୍ରାୟ ଦୁଇ ଲକ୍ଷରୁ ଅଧିକ ଲୋକ ଉକ୍ତ ସମିତିମାନଙ୍କର ସଭ୍ୟଶ୍ରେଣୀଭୁକ୍ତ ହୋଇ ସାରିଛନ୍ତି । ଫଳରେ ସାହୁକାରମାନେ ଯେଉଁ ଚଢ଼ା କଲନ୍ତରରେ ଋଣ କାରବାର କରୁଥିଲେ, ତାହା ବହୁ ପରିମାଣରେ କମିଯାଇଛି । ତେବେ ଯେଉଁ ଉଦ୍ଦେଶ୍ୟ ରଖି ଦେଶରେ ସମବାୟ ସମିତିମାନ ଗଠନ କରାଯାଇଥିଲା, ସେ ଉଦ୍ଦେଶ୍ୟ ପୂରାପୂରି ସଫଳ

ହୋଇପାରି ନାହିଁ । ତା'ର କାରଣ ହେଉଛି, ଆମ ଦେଶରେ ଅଧିକାଂଶ ଲୋକ ଅଶିକ୍ଷିତ ଥିବାରୁ ସମବାୟର ମୂଳମନ୍ତ୍ର ସମ୍ୟକ୍ ଭାବରେ ଗ୍ରହଣ କରିପାରିଲେ ନାହିଁ । ଯେଉଁ ଉଦ୍ଦେଶ୍ୟରେ ସେମାନେ ଋଣ ଗ୍ରହଣ କରିଥିଲେ, ସେ ଉଦ୍ଦେଶ୍ୟରେ ତାହା ବ୍ୟୟ ନ କରି ଅଯଥା ଅପବ୍ୟୟ କରିଦେଲେ । ଅଧିକାଂଶ ସ୍ଥାନରେ କୃଷିର ଉନ୍ନତି ପାଇଁ ସମବାୟ ଋଣ ସମିତିମାନ ଗଢ଼ାଯାଇଥିଲା; କିନ୍ତୁ ଉକ୍ତ ସମିତିରୁ ଋଣ ଗ୍ରହଣ କରି ଚାଷୀମାନେ କୃଷିର ଉନ୍ନତି କରିବା ଦୂରେ ଥାଉ ବିବାହ ଭୋଜି ଇତ୍ୟାଦି ଜାତିଆଣ ଖର୍ଚ୍ଚରେ ତାହା ଲଗାଇଦେଲେ । ତା'ପରେ ପରେ ୧୯୩୦ ମସିହାଠାରୁ ଆମ ଦେଶରେ ଏକ ଉତ୍କଟ ଆର୍ଥିକ ଦୁର୍ଗତି ଦେଖାଗଲା, ଯାହା ଫଳରେ ଧାନଚାଉଳ, ଜମିବାଡ଼ିର ମୂଲ୍ୟ ବହୁ ପରିମାଣରେ କମିଯାଇଥିଲା ।

ଏହିସବୁ କାରଣରୁ ସମବାୟ ଋଣ ସମିତିର ସଭ୍ୟମାନେ ନେଇଥିବା ଋଣ ପରିଶୋଧ କରିପାରିଲେ ନାହିଁ । ଫଳରେ ଯେଉଁ ଉଦ୍ଦେଶ୍ୟରେ ସମବାୟ ସମିତିମାନ ଗଢ଼ାଯାଇଥିଲା, ସେ ଉଦ୍ଦେଶ୍ୟ ପୂର୍ଣ୍ଣଭାବରେ ସଫଳ ହୋଇପାରିଲା ନାହିଁ ।

୧୯୩୯ ମସିହାଠାରୁ ସମୟର ଗତି ପୁଣି ବଦଳିଗଲା । ପୃଥିବୀବ୍ୟାପୀ ଦ୍ୱିତୀୟ ମହାସମର ଲାଗିଯିବା ଫଳରେ ଦେଶରେ ଜିନିଷପତ୍ରର ମୂଲ୍ୟ ଖୁବ୍ ବଢ଼ିଗଲା । ମୁନାଫାଖୋର ବ୍ୟବସାୟୀମାନେ ଚୋରାବଜାରରେ ଲୋକମାନଙ୍କୁ ହଇରାଣ କଲେ । ଏଥିରୁ ରକ୍ଷା ପାଇବା ପାଇଁ ଲୋକମାନେ ପୁଣି ସମବାୟ ନୀତି ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କଲେ । ଚୋରାବଜାର ହାତରୁ ରକ୍ଷା ପାଇବା ପାଇଁ ଖାଉଟିମାନେ ମିଳି ସମବାୟ ଭଣ୍ଡାରମାନ ଗଢ଼ିଲେ ।

ଏହି ଖାଉଟି ସମବାୟ ଭଣ୍ଡାର ଗଢ଼ିବା ମାତ୍ର ପ୍ରଥମେ ଇଂଲଣ୍ଡ ଦେଶରେ ୧୮୪୪ ମସିହାରେ ସୃଷ୍ଟିତ ହୋଇଥିଲା । ଇଂଲଣ୍ଡର ରକ୍‌ଡେଲ ନାମକ ଏକ ସ୍ଥାନରେ କେତୋଟି ପରିଶ୍ରମଶୀଳୀ ତନ୍ତୀ ଆପଣା ମଧ୍ୟରେ କିଛି ଚନ୍ଦା ଉଠାଇ ଏକ ଖାଉଟି ସମବାୟ ଭଣ୍ଡାର ଗଢ଼ିଥିଲେ । ଉକ୍ତ ସମିତିର ନିୟମ ଅନୁସାରେ ଯେଉଁ ଖାଉଟି ଯେତିକି ପରିମାଣରେ ଜିନିଷ ଖରିଦ କରୁଥିଲା, ସେ ସେହି ପରିମାଣରେ ସମିତିର ଲାଭରୁ ଲାଭ ପାଉଥିଲା । ଏହି ମାତ୍ର କ୍ରମଶଃ ଖୁବ୍ ସଫଳତା ଲାଭ କରିଥିଲା । ଫଳରେ ଇଂଲେଣ୍ଡ, ସୁଇଡେନ୍ ଡେନମାର୍କ ପ୍ରଭୃତି ଇଉରୋପର ବହୁ ଦେଶରେ ଏପରି ଅସଂଖ୍ୟ ସମବାୟ ଭଣ୍ଡାର ସ୍ଥାପିତ ହେଲା ଏବଂ କୋଟି କୋଟି ଟଙ୍କାର କାରବାର ଚାଲିଲା ।

ଆଜିକାଲି ଅନେକ ପ୍ରକାର ସମବାୟ ସମିତି ମଧ୍ୟ ସ୍ଥାପିତ ହେଲାଣି । ଖାଉଟିମାନଙ୍କ ପରି ଉତ୍ପାଦକମାନଙ୍କ ମଧ୍ୟରେ ମଧ୍ୟ ସମବାୟ ସମିତି ସ୍ଥାପିତ ହେଉଛି । ଆମେରିକାରେ ଏହିପରି ଭାବରେ ବହୁ ଉତ୍ପାଦକ ସମବାୟ ସମିତି ସ୍ଥାପିତ ହେଲାଣି ।

ଆମ ଦେଶରେ ମଧ୍ୟ ଚାଷୀ ଓ କୁଟୀରଶିଳ୍ପୀମାନଙ୍କ ମଧ୍ୟରେ ନାନାପ୍ରକାର ଉତ୍ପାଦକ ସମବାୟ ସମିତି ସ୍ଥାପିତ ହେଉଅଛି । ଆମ ଦେଶର ତନ୍ତୀମାନଙ୍କ ମଧ୍ୟରେ ବହୁ ତନ୍ତୁବାୟ ସହଯୋଗ ସମିତି ସ୍ଥାପିତ ହୋଇଛି । ତନ୍ତୀମାନେ ଉକ୍ତ ସମିତିଦ୍ୱାରା ମୋଟା ଦରରେ ସୂତା କିଣି ଆପଣା ମଧ୍ୟରେ ବାଣ୍ଟି ନେଉଛନ୍ତି । ଫଳରେ ମଧ୍ୟସ୍ଥ ବେପାରୀ ଯେଉଁ ଲାଭ ମାରି ନଅନ୍ତି, ତାହା ତନ୍ତୀମାନଙ୍କ ମଧ୍ୟରେ ବାଣ୍ଟି ହୋଇ ରହୁଛି । ଖୋଲାବଜାର ଭୟ ମଧ୍ୟ ରହୁ ନାହିଁ । ସେହିପରି ତେଲିମାନଙ୍କ ମଧ୍ୟରେ 'ଘଣା ସମବାୟ ସମିତି', କୁଟୀର-

ଶିଳ୍ପୀମାନଙ୍କ ମଧ୍ୟରେ 'ଶିଳ୍ପୀ ସମବାୟ ସମିତି' ମଧ୍ୟ ସ୍ଥାପିତ ହୋଇଅଛି ।

ସମାଜର ଯୋଡ଼ିଏ ଅଙ୍ଗ ହେଉଛି— ଉତ୍ପାଦକ ଓ ଖାଉଟି । ଏ ଦୁଇଟିଙ୍କ ମଧ୍ୟରେ ବ୍ୟବଧାନ ସ୍ୱରୂପ ରହି ମଧ୍ୟସ୍ଥ ମହାଜନ ଉଭୟ ଅଙ୍ଗକୁ ଶୋଷଣ କରୁଛି । ଏ ଶୋଷଣ ଦୂର କରିବାକୁ ହେଲେ ସମବାୟ ହିଁ ଏକମାତ୍ର ପନ୍ଥା । ବର୍ତ୍ତମାନ ଆମ ଦେଶର ଲୋକମାନେ ଏହି ତତ୍ତ୍ୱ କ୍ରମଶଃ ହୃଦୟଙ୍ଗମ କରିପାରିଲେଣି । ସେଥିପାଇଁ ଆଶା ହୁଏ ଯେ, ଆମ ଦେଶରେ ସମବାୟ ଆନ୍ଦୋଳନ ନିଶ୍ଚୟ ସଫଳ ହୋଇପାରିବ ।

ଆମ ଦେଶରେ କୃଷିକ୍ଷେତ୍ରମାନ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବାଣ୍ଟକୃତ ହୋଇଥିବା ଯୋଗୁଁ ଆଧୁନିକ ପ୍ରଣାଳୀରେ କୃଷି କରିହେଉ ନାହିଁ । ସେଥିର ପ୍ରତିକାର ହେଉଛି, ସମବାୟ ସୂତ୍ରରେ କୋଠଚାଷର ପ୍ରବର୍ତ୍ତନ କରିବା । ଚାଷୀ ଫସଲ ଅମଳ ସଙ୍ଗେ ସଙ୍ଗେ ଅଭାବ ଯୋଗୁଁ ଖୁବ୍ ଶସ୍ତା ଦରରେ ଫସଲ ଗଣ୍ଡାକ ବିକିଦେବାକୁ ବାଧ୍ୟ ହେଉଛି । ସମବାୟ ସମିତି ଗଢ଼ି ତଦ୍ୱାରା ଗୃହୀତ ଉତ୍ପନ୍ନ ଫସଲକୁ ସୁବିଧା ଦରରେ ବିକ୍ରୟ କରିବାର ବ୍ୟବସ୍ଥା ମଧ୍ୟ କରାଯାଇପାରେ ।

ତା'ଛଡ଼ା ଆମ ଦେଶରେ ଗାଆଁଗଣ୍ଡାର ସମୂହ ଉନ୍ନତି ଲାଗି ସର୍ବାଙ୍ଗୀନ ସମବାୟ ସମିତି ନାମକ ଏକ ପ୍ରକାର ସମିତି ଗଢ଼ାଯାଇଛି । ଉକ୍ତ ସମିତିର ଉଦ୍ଦେଶ୍ୟ ହେଉଛି—ଗ୍ରାମ ଲୋକମାନଙ୍କର ସର୍ବାଙ୍ଗୀନ ଉନ୍ନତିବିଧାନ କରିବା । ମହାତ୍ମା ଗାନ୍ଧୀ ମଧ୍ୟ ଏ ପ୍ରକାର ସମିତିଦ୍ୱାରା ଭାରତରେ 'ରାମରାଜ୍ୟ' ସ୍ଥାପନର କଳ୍ପନା କରିଥିଲେ । ମହାତ୍ମାଙ୍କ ଯଥାର୍ଥ କହି ଯାଇଛନ୍ତି—

"ସମବାୟ ସମିତି କେବଳ ଗ୍ରାମ ଉଦ୍‌ଯୋଗର ବିକାଶପାଇଁ ନୁହେଁ, ଗ୍ରାମବାସୀଙ୍କୁ ମିଳାମିଶା କରି ଅଗ୍ରସର କରାଇବା ପାଇଁ ଏକ ଆଦର୍ଶ ଓ ଉପଯୁକ୍ତ ସଂଗଠନ ଅଟେ । ସର୍ବାଙ୍ଗୀନ ଗ୍ରାମ ସମବାୟ ସମିତି ବହୁ ଦିଗରୁ ବହୁ ଲାଭ କରି ସଫଳତା ଅର୍ଜ୍ଜନ କରିପାରେ । ତାହା କୁଟୀରଶିଳ୍ପ, କଞ୍ଚାମାଲ ସଂଗ୍ରହ, ଗ୍ରାମରୁ ଉତ୍ପନ୍ନ ଦ୍ରବ୍ୟର ବିକ୍ରୟ ବ୍ୟବସ୍ଥା, ଗ୍ରାମବାସୀଙ୍କ ଲାଗି ଆବଶ୍ୟକ ଖାଦ୍ୟସଂଗ୍ରହ, ଅନ୍ୟାନ୍ୟ ଆବଶ୍ୟକ ଜିନିଷ, ଯଥା କ୍ଷେତ ପାଇଁ ଉପଯୁକ୍ତ ସାର ଓ ବିହନ ବିତରଣ ତଥା ପଶୁସମ୍ପଦର ଉନ୍ନତି ଲାଗି ଯଥେଷ୍ଟ କାମ କରିପାରେ ।"

ସମବାୟ ଉଦ୍ୟମର ମୂଳମନ୍ତ୍ର ହେଉଛି ଯେ, ତାର ସଭ୍ୟମାନେ ନ୍ୟାୟପରାୟଣ ହେବେ ଓ ସହଯୋଗ ମନ୍ତ୍ର ଭଲ ଭାବରେ ଜାଣିଥିବେ । ସେମାନଙ୍କର ଲକ୍ଷ୍ୟ ନିର୍ଦ୍ଦିଷ୍ଟ ଓ ପ୍ରଗତିଶୀଳ ହୋଇଥିବ ।

ଆମ ଦେଶ ବର୍ତ୍ତମାନ ସ୍ୱାଧୀନ ହୋଇଅଛି । ଆଶା କରାଯାଏ, ଆମ ଦେଶର ଲୋକେ ସମବାୟର ମୂଳମନ୍ତ୍ର ଉପଯୁକ୍ତ ଭାବରେ ଗ୍ରହଣ କରି ଦେଶ ଓ ଦଶର ମଙ୍ଗଳବିଧାନ କରିବା ପାଇଁ କାର୍ଯ୍ୟ କରିବେ ।

## ପ୍ରଶ୍ନ

୧ । ସମବାୟ ସମିତିଦ୍ୱାରା ଦେଶର କି ଉପକାର ହୁଏ—ଏ ବିଷୟ ବର୍ଣ୍ଣନ କରି ତୁମ ଗ୍ରାମର ଜଣେ ବିଶିଷ୍ଟ ଲୋକଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖ ।

୨ । ସମବାୟ ସମିତି ସର୍ବପ୍ରଥମେ କେଉଁଠି ଓ କେଉଁ ସମୟରେ ଗଠିତ ହୋଇଥିଲା ଏବଂ ଆମ ଦେଶରେ ତାହା କିପରି କାର୍ଯ୍ୟ କରୁଛି ଲେଖ ।

୩ । "ଆମ ଦେଶରେ ବହୁକାଳରୁ ପ୍ରଚଳିତ ଏକାନ୍ନବର୍ତ୍ତୀ ପରିବାର ମୂଳରେ ଏହି ସମବାୟ ନୀତି ହିଁ ନିହିତ ଥିଲା"—ଏ କଥାଟି ଉପରେ ଠିକ୍ ବୁଝାଇ ଦିଅ ।

୪ । ରେଖାଙ୍କିତ ସ୍ଥାନରେ ଉପଯୁକ୍ତ ଶବ୍ଦ ବସାଇ ବାକ୍ୟ ଗଠନ କର । ସର୍ବାଙ୍ଗୀନ—, ପ୍ରଚଳିତଶୀଳ—, ପୃଥିବୀବ୍ୟାପୀ , ଏକାନ୍ନବର୍ତ୍ତୀ— ।

---

# ମହମ୍ମଦ

ଆରବ ଦେଶର ଏକ ଦରିଦ୍ର ପରିବାରରେ ୫୭୦ ଖ୍ରୀଷ୍ଟାବ୍ଦରେ ମହାପୁରୁଷ ମହମ୍ମଦ ଜନ୍ମଗ୍ରହଣ କରିଥିଲେ । ସେ ମାତୃକୋଡ଼ରେ ଶିଶୁ ଥିବା ସମୟରେ ତାଙ୍କର ପିତା ଅବଦୁଲଙ୍କର ମୃତ୍ୟୁ ହୋଇଥିଲା । ତେଣୁ ମହମ୍ମଦଙ୍କର ଅଭିଭାବକ ହୋଇଥିଲେ ତାଙ୍କର ଶତାଧିକ-ବର୍ଷ ବୟସ୍କ ବୃଦ୍ଧ ପିତାମହ ।

ମହମ୍ମଦଙ୍କର ବୟସ ଯେତେବେଳେ ଛଅ ବର୍ଷ, ସେତେବେଳେ ତାଙ୍କର ସ୍ନେହମୟୀ ଜନନୀ ପ୍ରାଣତ୍ୟାଗ କରିଥିଲେ ଓ ଏହି ଘଟଣାର ଅଳ୍ପ କାଳ ପରେ ତାଙ୍କର ବୃଦ୍ଧ ପିତାମହଙ୍କର ମଧ୍ୟ ଇହଲୀଳା ଶେଷ ହୋଇଥିଲା । ତତ୍ପରେ ମହମ୍ମଦଙ୍କର ଲାଳନପାଳନ ଭାର ଗ୍ରହଣ କରିଥିଲେ ତାଙ୍କର ପିତୃବ୍ୟ ଆବୁ ତାଲେବ ।

ମହମ୍ମଦ କୌଣସି ବିଦ୍ୟାଳୟରେ ଶିକ୍ଷା ଅର୍ଜ୍ଜନ କରି ନ ଥିଲେ । ସେ ନିରକ୍ଷର ଥିଲେ ବୋଲି ଅନେକଙ୍କର ମତ; କିନ୍ତୁ ବାଲ୍ୟକାଳରେ ସେ ପିତୃବ୍ୟ ଆବୁ ତାଲେବଙ୍କ ସହିତ ବାଣିଜ୍ୟ ଉଦ୍ଦେଶ୍ୟରେ ନାନା ସ୍ଥାନ ଭ୍ରମଣ କରିଥିଲେ । ଏହାଦ୍ୱାରା ବିଭିନ୍ନ

ସ୍ଥାନର ଅଧିବାସୀଙ୍କ ବିଷୟରେ ତାଙ୍କର ଯଥେଷ୍ଟ ଅଭିଜ୍ଞତା ଜନ୍ମିଥିଲା । ସେ ବାଣିଜ୍ୟ ଉପଲକ୍ଷରେ ଧନଜନପୂର୍ଣ୍ଣ ସିରିଆ ରାଜ୍ୟକୁ ପିତୃବ୍ୟଙ୍କ ସହିତ ଅନେକବାର ଯାଇ ସେଠାର ଅଧିବାସୀଙ୍କ ସଙ୍ଗେ ପରିଚିତ ହୋଇଥିଲେ ।(ତାଙ୍କର ସୁନ୍ଦର ରୂପ, ମଧୁର ବ୍ୟବହାର ଓ ସାଧୁଭାବାର ସମସ୍ତେ ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ । )

ମହମ୍ମଦ ତାଙ୍କର ଯୌବନାବସ୍ଥାରେ ଖାଦିଜା ନାମ୍ନୀ ଏକ ବିଧବା ନାରୀଙ୍କ ସହିତ ପରିଚିତ ହେଲେ । ଖାଦିଜାଙ୍କର ଯଥେଷ୍ଟ ଧନସମ୍ପତ୍ତି ଥିଲା ଓ ଆରବ, ସିରିଆ ଆଦି ଦେଶରେ ତାଙ୍କର ବାଣିଜ୍ୟ କାରବାର ଚଳୁଥିଲା । ମହମ୍ମଦ ଖାଦିଜାଙ୍କର ସମସ୍ତ ବାଣିଜ୍ୟ ବ୍ୟବସାୟର ପରିଚାଳକରୂପେ ନିଯୁକ୍ତ ହୋଇଥିଲେ । ତାଙ୍କର ବାଣିଜ୍ୟ ଦକ୍ଷତା, କର୍ତ୍ତବ୍ୟନିଷ୍ଠା ଓ ସାଧୁତାରେ ଖାଦିଜା ମୁଗ୍ଧ ହୋଇଥିଲେ । ପରିଶେଷରେ ଖାଦିଜାଙ୍କ ସଙ୍ଗେ ମହମ୍ମଦଙ୍କର ବିବାହ ହୋଇଥିଲା । ଏହି ବିବାହ ସମୟରେ ମହମ୍ମଦଙ୍କ ବୟସ ଥିଲା ପଚିଶ ବର୍ଷ ଓ ଖାଦିଜାଙ୍କ ବୟସ ଚାଳିଶ ବର୍ଷ । ବୟସରେ ଏତେ ବୈଷମ୍ୟ ଥିଲେ ମଧ୍ୟ ଉଭୟେ ଏହି ବିବାହରେ ସୁଖସନ୍ତୋଷ ଲାଭ କରିଥିଲେ ଏବଂ ଏହି ବିବାହ ପରେ ମହମ୍ମଦଙ୍କ ଜୀବନରେ ସୌଭାଗ୍ୟର ଉଦୟ ହୋଇଥିଲା ।

ମହମ୍ମଦ ବାଲ୍ୟକାଳରୁ ଏକାକୀ ନିର୍ଜ୍ଜନରେ ବସି ଭଗବାନଙ୍କ ବିଷୟରେ ଚିନ୍ତା କରିବାକୁ ଭଲ ପାଉଥିଲେ । ବୟସବୃଦ୍ଧି ସଙ୍ଗେ ସଙ୍ଗେ ସେ ଈଶ୍ୱରଙ୍କ ପ୍ରତି ଅଦ୍ଭୁତ ବିଶେଷ ଭାବରେ ଆକୃଷ୍ଟ ହେଲେ । ପ୍ରତିବର୍ଷ ରମଜାନ୍ ପର୍ବ ସମୟରେ ସେ ମାସେ କାଳ ନିର୍ଜ୍ଜନ ବାସ କରି ଭଗବାନାରାଧନାରେ ଲିପ୍ତ ରହୁଥିଲେ । ତାଙ୍କର ଚାଳିଶ

ବର୍ଷ ବୟଃକ୍ରମ କାଳରେ ସେ ମକ୍କା ନିକଟବର୍ତ୍ତୀ ହିରା ପାହାଡ଼ରେ ନିର୍ଜ୍ଜନ ବାସ କରି ରମଜାନ ପାଳନ କରିଥିଲେ । ସେତେବେଳେ ସେ ପରମେଶ୍ୱରଙ୍କ କୃପାରୁ ଗେବ୍ରିଏଲ ନାମକ ଏକ ଦିବ୍ୟ ପୁରୁଷଙ୍କୁ ଦେଖିଥିଲେ ଓ ତାଙ୍କଠାରୁ କେତେକ ସତ୍ୟ ଲାଭ କରିଥିଲେ ।

ଏହି ସମୟରୁ ମହମ୍ମଦଙ୍କ ଜୀବନର ପଥ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ସେ ଦୃଢ଼ରୂପେ ବିଶ୍ୱାସ କଲେ ଯେ, ଈଶ୍ୱର ହେଉଛନ୍ତି ଏକମାତ୍ର ସତ୍ୟ । ତାଙ୍କର ଦେଶବାସୀ ଯେ ଅସଂଖ୍ୟ ଦେବଦେବୀଙ୍କ ପ୍ରତିମା ପୂଜା କରୁଥିଲେ, ସେ ସବୁ ମିଥ୍ୟା ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା । ତହୁଁ ସେ ଘୋଷଣା କଲେ, "ଆଲ୍ଲା ହୋ ଆକବର" ଅର୍ଥାତ୍ "ଈଶ୍ୱର ହେଉଛନ୍ତି ସର୍ବାପେକ୍ଷା ମହତ୍ ଓ ଇସଲାମ ବା ଈଶ୍ୱରଙ୍କଠାରେ ଶରଣାପନ୍ନ ହେବା ହେଉଛି ମାନବ ଜୀବନର ପ୍ରଧାନ ଅବଲମ୍ବନ ।"

ଆରବ ଦେଶର ଅଧିବାସୀମାନେ ସେତେବେଳେ ନାନା ଦେବଦେବୀଙ୍କଠାରେ ଅଟଳ ବିଶ୍ୱାସ ସ୍ଥାପନ କରି ସେମାନଙ୍କର ପ୍ରତିମା ପୂଜା କରୁଥିଲେ । ମକ୍କାଠାରେ କାବା ନାମକ ଦେବତାଙ୍କର ଏକ ବିରାଟ ମନ୍ଦିର ଥିଲା ଓ ସେଠାର ପୂଜକମାନେ ସମଗ୍ର ଦେଶରେ ଅଖଣ୍ଡ ପ୍ରଭାବଶାଳୀ ଥିଲେ । ସେହି ପୂଜକମାନଙ୍କୁ କୁହାଯାଉଥିଲା କୁରେଇସ୍ । ମହମ୍ମଦ ପ୍ରଚାର କଲେ ଯେ କାବା ଦେବତା ମଧ୍ୟ ମିଥ୍ୟା; ଏକମାତ୍ର ଈଶ୍ୱର ସତ୍ୟ । ଏଥିରେ କୁରେଇସ୍‌ମାନେ ଓ ସେମାନଙ୍କ ସହିତ ବହୁସଂଖ୍ୟକ ଲୋକ ମହମ୍ମଦଙ୍କର ଶତ୍ରୁତାଚରଣ କରିବାକୁ ଲାଗିଲେ ।

ମହମ୍ମଦଙ୍କର ଧର୍ମପତ୍ନୀ ଖାଦିଜା ସର୍ବପ୍ରଥମେ ତାଙ୍କର ପ୍ରଚାରିତ ନୂତନ ସତ୍ୟ ଗ୍ରହଣ କରିଥିଲେ । ତାଙ୍କ ପରେ ତାଙ୍କର ବିଶ୍ୱସ୍ତ ଭୃତ୍ୟ ଜଏଦ୍ ଓ ଆବୁ ତାଲେବଙ୍କ ପୁତ୍ର ଆଲ୍ଲୀ ସେହି ସତ୍ୟ ସ୍ୱୀକାର କରି ମୁସଲମାନ ଧର୍ମ ଗ୍ରହଣ କଲେ । କିନ୍ତୁ ଆରବର ଅଧିକାଂଶ ଲୋକ ମହମ୍ମଦଙ୍କ ପ୍ରଚାରିତ ଧର୍ମ ଗ୍ରହଣ କଲେ ନାହିଁ । ତିନି ବର୍ଷ ମଧ୍ୟରେ ମହମ୍ମଦ ମାତ୍ର ତେର ଜଣ ବ୍ୟକ୍ତିଙ୍କୁ ସ୍ୱୀୟ ଧର୍ମପଥର ପଥିକରୂପେ ପାଇଥିଲେ । ପ୍ରତି ବର୍ଷ ସହସ୍ର ସହସ୍ର ଯାତ୍ରୀ କାବା ମନ୍ଦିରରେ ପୂଜା କରିବା ନିମନ୍ତେ ମକ୍କା ନଗରୀରେ ସମବେତ ହେଉଥିଲେ । ମହମ୍ମଦ ସେମାନଙ୍କୁ ନିଜର ଧର୍ମବାଣୀ ଶୁଣାଉଥିଲେ, କିନ୍ତୁ କୁରେଇଶମାନଙ୍କ ଭୟରେ କେହି ତାଙ୍କର ଧର୍ମମତ ଗ୍ରହଣ କରିବାକୁ ସାହସ କରୁ ନ ଥିଲେ । ମକ୍କାର ଯେଉଁ ଅଳ୍ପ କେତେ ଜଣ ମହମ୍ମଦଙ୍କ ନୂତନ ଧର୍ମ ଅବଲମ୍ବନ କରିଥିଲେ, କୁରେଇଶମାନେ ଲୋକଙ୍କୁ ଉତ୍ତେଜିତ କରି ସେମାନଙ୍କର ଅନିଷ୍ଟ ସାଧନ କରିବାକୁ ଲାଗିଲେ । ସେମାନଙ୍କ ପ୍ରତି ଅତ୍ୟାଚାରର ମାତ୍ରା କ୍ରମେ ଏତେ ବୃଦ୍ଧି ପାଇଲା ଯେ, ସେମାନଙ୍କ ପକ୍ଷରେ ମକ୍କାରେ ବାସ କରିବା ଅସମ୍ଭବ ହୋଇଥିଲା । ତେଣୁ ମହମ୍ମଦଙ୍କ ନିର୍ଦ୍ଦେଶରେ ସେମାନେ ସମସ୍ତେ ଆରବ ଦେଶ ତ୍ୟାଗ କରି ଆବିସିନିଆ ରାଜ୍ୟକୁ ପଳାୟନ କଲେ ।

ମହମ୍ମଦଙ୍କ ପଚାଶ ବର୍ଷ ବୟଃକ୍ରମ କାଳରେ ତାଙ୍କର ପତ୍ନୀ ଖାଦିଜାଙ୍କ ମୃତ୍ୟୁ ହୋଇଥିଲା । ତାଙ୍କ ମୃତ୍ୟୁର ଅଳ୍ପକାଳ ପରେ ଧର୍ମପ୍ରାଣ ଆବୁ ତାଲେବ ମଧ୍ୟ ମୃତ୍ୟୁମୁଖରେ ପତିତ ହେଲେ । ଏ ଦୁହିଁଙ୍କୁ ହରାଇ ମହମ୍ମଦ ନିଜକୁ ନିତାନ୍ତ ଅସହାୟ ମନେକଲେ । ଦୁଃଖବିପଦରେ ଉପଦେଶ ବା ସାନ୍ତ୍ୱନା ଦେବା ପାଇଁ ତାଙ୍କର

ଆଉ କେହି ରହିଲେ ନାହିଁ । ତାଙ୍କର ନୂତନ ଧର୍ମମତ ଯୋଗୁଁ ମକ୍‌କାରେ ବାସକରିବା ମଧ୍ୟ ତାଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ଏତେ ବିପଦରେ ମଧ୍ୟ ସେ ଧୈର୍ଯ୍ୟଚ୍ୟୁତ ହୋଇ ନ ଥିଲେ । ବିଭିନ୍ନ ସ୍ଥାନରେ ଆତ୍ମଗୋପନ କରି ବହୁ କଷ୍ଟ ସହି ସେ ଉପବାସ ଓ ଅର୍ଦ୍ଧାସନରେ ତିନି ବର୍ଷ କାଳ କଟାଇଲେ ।

ଆରବ ଦେଶରେ ସେତେବେଳେ ଗୃହଶତି ଜାତିର ଲୋକ ବାସ କରୁଥିଲେ । କୁରେଇଶମାନେ ଏମାନଙ୍କ ମଧ୍ୟରୁ ଜଣେ ଲେଖାଏଁ ଦୁର୍ଦ୍ଦାନ୍ତ ଲୋକ ବାଛି ସେମାନଙ୍କଦ୍ୱାରା ମହମ୍ମଦଙ୍କର ପ୍ରାଣବିନାଶର ଚେଷ୍ଟା କରିଥିଲେ । ମହମ୍ମଦ ଏହି ସମ୍ବାଦରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପ୍ରାଣରକ୍ଷା ନିମନ୍ତେ ମକ୍‌କାଠାରୁ ୨୦୦ ମାଇଲ ଦୂରବର୍ତ୍ତୀ ମଦିନା ନଗରକୁ ପଳାୟନ କଲେ । ମହମ୍ମଦଙ୍କର ଏ ମଦିନା ପ୍ରସ୍ଥାନକୁ କୁହାଯାଏ ହିଜର୍ ଓ ସେହି ଦିନଠାରୁ ମୁସଲମାନମାନେ ହିଜର୍ ଅବ୍ଦ ଗଣନା କରନ୍ତି । ହିଜରୀ ଅବ୍ଦର ପ୍ରଥମ ବର୍ଷ ହେଉଛି ୬୨୨ ଖ୍ରୀଷ୍ଟାବ୍ଦ ।

ମଦିନାର ଅଧିବାସୀମାନେ ମହମ୍ମଦଙ୍କୁ ସାଦର ଅଭ୍ୟର୍ଥନା କରି ଆଶ୍ରୟ ଦେଲେ । ତାଙ୍କର ପ୍ରଚାରିତ ବାଣୀ—"ଏକମାତ୍ର ଈଶ୍ୱର ହିଁ ସମସ୍ତଙ୍କଠାରୁ ଶ୍ରେଷ୍ଠ; ତାଙ୍କର ଶରଣାପନ୍ନ ହୁଅ"— ମଦିନାବାସୀଙ୍କୁ ବିଶେଷଭାବରେ ଅନୁପ୍ରାଣିତ କଲା । ସେମାନେ ପୌତ୍ତଳିକତା ତ୍ୟାଗକରି ମହମ୍ମଦଙ୍କ ପ୍ରବର୍ତ୍ତିତ ମୁସଲମାନ ଧର୍ମ ଗ୍ରହଣ କଲେ । ଏହି ଘଟଣାରେ ମକ୍‌କାର କୁରେଇସ୍‌ମାନେ ଆତଙ୍କିତ ହୋଇପଡ଼ିଲେ । ସେମାନେ ମଦିନାବାସୀଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ମକ୍‌କାର ଅଧିବାସୀମାନଙ୍କୁ ଉତ୍ତେଜିତ କଲେ । ଉଭୟ ନଗର ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା ଓ ପରିଶେଷରେ

ମକ୍କାବାସୀ ପରାସ୍ତ ହୋଇ ମହମ୍ମଦଙ୍କୁ ଈଶ୍ବରଙ୍କର ଧର୍ମଦୂତ ରୂପେ ଗ୍ରହଣ କଲେ । ଅଳ୍ପକାଳ ମଧ୍ୟରେ ସମଗ୍ର ଆରବ ଦେଶରେ ମହମ୍ମଦଙ୍କ ପ୍ରବର୍ତ୍ତିତ ମୁସଲମାନ ଧର୍ମ ବ୍ୟାପିଗଲା ଓ ମହମ୍ମଦ ମହାପୁରୁଷ ରୂପେ ସର୍ବତ୍ର ସମ୍ମାନିତ ହେଲେ ।

ମଦିନା ପ୍ରସ୍ଥାନ ପରେ ମହମ୍ମଦ ଦଶ ବର୍ଷ ମାତ୍ର ବଞ୍ଚିଥିଲେ । ଏହି ସମୟ ମଧ୍ୟରେ ସେ ମୁସଲମାନ ଧର୍ମକୁ ଦୃଢ଼ ଭିତ୍ତିରେ ପ୍ରତିଷ୍ଠିତ କରିପାରିଥିଲେ । ମୁସଲମାନମାନଙ୍କର ଧର୍ମଗ୍ରନ୍ଥ କୋରାନ୍‌ରେ ମହାପୁରୁଷ ମହମ୍ମଦଙ୍କର ମୁଖନିଃସୃତ ବାଣୀ ଲିପିବଦ୍ଧ ହୋଇଅଛି । କୋରାନ୍ ପରି ଉଦାର ଭାବାପନ୍ନ ଧର୍ମଗ୍ରନ୍ଥ ପୃଥିବୀରେ ଅତି ଅଳ୍ପ ପରିଦୃଷ୍ଟ ହୁଏ ।

## ପ୍ରଶ୍ନ

୧ । ମହାପୁରୁଷ ମହମ୍ମଦଙ୍କ ଜୀବନରୁ ତୁମେ କଅଣ ଶିକ୍ଷାଲାଭ କଲ ଲେଖ ।

୨ । ମହମ୍ମଦଙ୍କ ପ୍ରବର୍ତ୍ତିତ ଧର୍ମବାଣୀ ନିଜ ଭାଷାରେ ଉଲ୍ଲେଖ କର ।

୩ । ଭାବାର୍ଥ ଲେଖ—

ଈଶ୍ବର ହେଉଛନ୍ତି···ମାନବ-ଜୀବନର ପ୍ରଧାନ ଅବଲମ୍ବନ ।

୪ । ଏକପଦରେ ପ୍ରକାଶ କର—

ପିତାଙ୍କର ଭ୍ରାତା, ପିତାଙ୍କର ମାତା, ଯେ ପୁତ୍ତଳିକା ପୂଜା କରନ୍ତି, ଯେ ଧର୍ମ ପ୍ରଚାର କରନ୍ତି ।

୫ । ବିପରୀତ ଶବ୍ଦ ଲେଖ—

ବୈଷମ୍ୟ, ସୌଭାଗ୍ୟ, ଶତ୍ରୁତା, ସ୍ବୀକାର, ଦୂରବର୍ତ୍ତୀ, ଅସମ୍ଭବ ।

# ଆଦିବାସୀ

ଓଡ଼ିଶାର ବିସ୍ତୃତ ବନଭୂମିରେ କନ୍ଧ, କୋଲ୍ହ, ସାନ୍ତାଳ, ଗଣ୍ଡ, ଭୂୟାଁ, ଜୁଆଙ୍ଗ, ପରଜା, ସଉରା ପ୍ରଭୃତି ଜାତିର ଲୋକମାନେ ବାସ କରନ୍ତି । ଆର୍ଯ୍ୟମାନେ ଭାରତରେ ବସତିସ୍ଥାପନ କରିବା ପୂର୍ବରୁ ଏମାନଙ୍କର ପୂର୍ବପୁରୁଷମାନେ ଏ ଦେଶରେ ବାସ କରୁଥିଲେ । ପ୍ରକୃତରେ ଏମାନେ ଭାରତର ଆଦିମ ଅଧିବାସୀ । ଆର୍ଯ୍ୟମାନେ ଆସିବା ପରେ ଏମାନଙ୍କୁ ଅନାର୍ଯ୍ୟ ବୋଲି କୁହାଗଲା । ଅନାର୍ଯ୍ୟର ପ୍ରକୃତ ଅର୍ଥ, ଯେଉଁମାନେ ଆର୍ଯ୍ୟ ନୁହନ୍ତି । ଆଜିକାଲି ଏମାନଙ୍କୁ ଆଦିମ ଅଧିବାସୀ ବା ଆଦିବାସୀ ବୋଲି କୁହାଯାଉଅଛି । 'ଆଦିବାସୀ' ନାମ ହିଁ ସେମାନଙ୍କ ପକ୍ଷରେ ଗୌରବଜନକ । ଆର୍ଯ୍ୟମାନେ ଭାରତର ବିଭିନ୍ନ ଅଞ୍ଚଳରେ ପ୍ରବେଶ କରିବା ପରେ ଆଦିବାସୀମାନଙ୍କୁ ବନମଧ୍ୟକୁ ବିତାଡ଼ିତ କରିଦେଲେ । ଆର୍ଯ୍ୟମାନଙ୍କର ସାହିତ୍ୟ ଓ ସଭ୍ୟତା ଏବଂ ସାଧାରଣ ଜୀବନ-ଧାରଣ ପ୍ରଣାଳୀ ଏମାନଙ୍କ ସହିତ ସମାନ ନ ଥିଲା । ତେଣୁ ଉଭୟ ଗୋଷ୍ଠୀ ପରସ୍ପର ସହିତ ମିଳିମିଶି ରହିପାରୁ ନ ଥିଲେ । ଏହାର ଫଳରେ ବହୁ ଶତାବ୍ଦୀ ଧରି ଆଦିମ ଅଧିବାସୀମାନଙ୍କ ଜୀବନରେ କୌଣସି ପ୍ରକାର ପରିବର୍ତ୍ତନ ହୋଇ ନ ଥିଲା । ବର୍ତ୍ତମାନ ଆଧୁନିକ ସଭ୍ୟତାର ପ୍ରସାର ସଙ୍ଗେ ସଙ୍ଗେ ଏ ପ୍ରଭେଦ କ୍ରମେ ଘୁଞ୍ଚିଯିବା ଫଳରେ ଆଦିବାସୀମାନେ ସମସ୍ତଙ୍କ ସହିତ ମିଳା ମିଶା କଲେଣି । ତଥାପି ଏ ପର୍ଯ୍ୟନ୍ତ ଏପରି ଅନେକ ଅଞ୍ଚଳ ରହିଅଛି, ଯେଉଁଠାରେ ଆଦିବାସୀମାନଙ୍କ ଜୀବନର ମୌଳିକ ପ୍ରକୃତିରେ ବିଶେଷ ପରିବର୍ତ୍ତନ ହୋଇ ନାହିଁ । ସେମାନଙ୍କ ଜୀବନ ବିଷୟରେ ଆଲୋଚନା କଲେ

ଆମେ ମନୁଷ୍ୟର ଅତୀତ ଯୁଗର ଜୀବନଯାପନପ୍ରଣାଳୀ ସମ୍ପର୍କରେ ଅନେକ କଥା ଜାଣିପାରିବା ।

ପ୍ରଥମ ଅବସ୍ଥାରେ ପର୍ବତର ଗୁମ୍ଫାମାନଙ୍କରେ ବାସ କରି, ବନର ଫଳ ମୂଳ ଖାଇ ଏବଂ ଶିକାର କରି ଏମାନେ ଅତି ସରଳଭାବରେ ଜୀବନଯାପନ କରୁଥିଲେ । ବର୍ତ୍ତମାନ ମଧ୍ୟ ଏମାନେ ଶିକାର କରନ୍ତି । ଲୁହା ପ୍ରଭୃତି ଧାତୁ ଦ୍ରବ୍ୟର ବ୍ୟବହାର ଜାଣିବା ପୂର୍ବରୁ ସେମାନେ ପ୍ରସ୍ତରରେ ନାନାପ୍ରକାର ଅସ୍ତ୍ରଶସ୍ତ୍ର ନିର୍ମାଣ କରୁଥିଲେ । ଆଜିକାଲି ମଧ୍ୟ କେତେକ ଧନୁଶର, ବର୍ଚ୍ଛା, ଟାଙ୍ଗିଆ ଫାର୍ସା ପ୍ରଭୃତି ଅସ୍ତ୍ରଶସ୍ତ୍ର ବ୍ୟବହାର କରନ୍ତି । ସ୍ତ୍ରୀଲୋକମାନେ ବନ ମଧ୍ୟରୁ ନାନାପ୍ରକାର ଫଳ, ମୂଳ ଓ ଶାଗ ସଂଗ୍ରହ କରିବା ପ୍ରଥା ବର୍ତ୍ତମାନ ମଧ୍ୟ ରହିଛି । ସଭ୍ୟ ଲୋକଙ୍କ ସହିତ ମିଶି ସେମାନେ ଧାନ, ମାଣ୍ଡିଆ, ହରଡ଼, ରାଶି ପ୍ରଭୃତି ଶସ୍ୟ ଉତ୍ପାଦନ କରିବାକୁ ମଧ୍ୟ ଶିଖିଲେଣି । ଅରଣ୍ୟର ଯାଯାବର ଜୀବନ ଛାଡ଼ି କ୍ରମେ କ୍ରମେ ସେମାନେ କୁଡ଼ିଆଘର ତିଆରି କରି ବାସ କରୁଥିଲେ, କିନ୍ତୁ କ୍ରମେ ଆହୁରି ଉନ୍ନତ କରିବା ପାଇଁ ସେମାନେ ବନର କାଠ, ବାଉଁଶ ମଧ୍ୟ ବ୍ୟବହାର କରି ଶିଖିଲେ । ଅଧିକାଂଶ ଘରର କାନ୍ଥ କାଠପଟାରେ ତିଆରି । ଛାତରେ ନଡ଼ା, ବଣର ବଡ଼ ବଡ଼ ଶୁଖିଲା ଘାସ, ପତ୍ର କମ୍ବା ଡାଳ, ଖଜୁରିର ବାହୁଙ୍ଗା । ଖାଦ୍ୟ ଓ ବାସଗୃହ ଯେପରି ନିରାଡ଼ମ୍ବର, ସେମାନଙ୍କର ବସ୍ତ୍ର ବ୍ୟବହାର ମଧ୍ୟ ସେହିପରି ଅଳ୍ପ ଓ ସରଳ । ଗୋଟି ଗୋଟି କରିଆ ବା ଗାମୁଛା ଦୁଇଖଣ୍ଡ ହେଲେ ଚଳିଗଲା । କେତେକ ଖଣ୍ଡେ ଚମଡ଼ା ଲୁଗାକୁ ଅଣ୍ଟାରେ ଗୁଡ଼ାଇ କଉପୁନି ମାରିଥାଆନ୍ତି । ମୋଟା ଖଦା ଖଣ୍ଡେ ହେଲେ ସ୍ତ୍ରୀ ଲୋକ-ମାନଙ୍କର ଚଳିଯାଏ । ବସ୍ତ୍ରର ବ୍ୟବହାର ଶିଖିବା ପୂର୍ବରୁ ସେମାନେ ପତ୍ରର ମାଳା କରି ପିନ୍ଧୁଥିଲେ ।

ଖାଦ୍ୟ, ବାସଗୃହ ଓ ପୋଷାକ ପରିଚ୍ଛଦରେ ସେମାନେ ଯେପରି ଆଡ଼ମ୍ବରହୀନ, ସେମାନଙ୍କର ସାଧାରଣ ପ୍ରକୃତି ମଧ୍ୟ ସେହିପରି ଅତ୍ୟନ୍ତ ସରଳ । ସାଧାରଣତଃ ସେମାନେ ଶାନ୍ତିପ୍ରିୟ ଓ ସରଳ-ବିଶ୍ୱାସୀ । କୌଣସି ପ୍ରକାର କୁଟିଳ ବ୍ୟବହାର ସେମାନଙ୍କ ପ୍ରକୃତିର ବହିର୍ଭୂତ । ସେଥିଲାଗି ସେମାନେ ପରସ୍ପରକୁ ଦୃଢ଼ଭାବରେ ବିଶ୍ୱାସ କରନ୍ତି ଏବଂ ସୁଖସ୍ୱାଚ୍ଛନ୍ଦ୍ୟରେ ଜୀବନଯାପନ କରନ୍ତି । ପିତାମାତା, ଆତ୍ମୀୟସ୍ୱଜନ, ଭାଇବନ୍ଧୁ ଭାବରେ ସେମାନେ ପରସ୍ପରକୁ ଯେପରି ଗଭୀର ଭାବରେ ସ୍ନେହ କରନ୍ତି, ତନ୍ମଧ୍ୟରେ କୌଣସି ପ୍ରକାର କୃତ୍ରିମତା ନ ଥାଏ । ସଭ୍ୟସମାଜର ଲୋକଦେଖାଣିଆ ଭଦ୍ରତା ସେମାନେ ଶିଖି ନାହାନ୍ତି । ଜଣକର ଗୁଣ ଦେଖିଲେ ପ୍ରଶଂସା କରିବାକୁ ସେମାନେ କୁଣ୍ଠିତ ହୁଅନ୍ତି ନାହିଁ । ସେହିପରି ଦୋଷ ଥିଲେ ସ୍ପଷ୍ଟ-ଭାବେ ମୁହଁ ଉପରେ କହିଦେବାକୁ ମଧ୍ୟ ସେମାନେ ଭୟ ବା ସଂକୋଚ ବୋଧ କରନ୍ତି ନାହିଁ କିନ୍ତୁ ସେମାନଙ୍କର କ୍ରୋଧ ଓ ପ୍ରତିହିଂସା ମଧ୍ୟ ଅଛି । ଅନ୍ୟାୟ ଦେଖିଲେ ବିଶେଷତଃ ବିଶ୍ୱାସ-ଘାତକତା ଦେଖିଲେ ଆଦିବାସୀମାନେ ଅତ୍ୟନ୍ତ କ୍ରୁଦ୍ଧ ହୁଅନ୍ତି ଏବଂ ସେତେବେଳେ ନରହତ୍ୟା କରିବାକୁ ମଧ୍ୟ ପଶ୍ଚାତ୍ପଦ ହୁଅନ୍ତି ନାହିଁ । ସରଳଭାବରେ ନିଜେ କରିଥିବା ସତ୍ୟ ଘଟଣା ପ୍ରକାଶ କରିବା ବିଷୟରେ ମଧ୍ୟ ଆଦିବାସୀମାନେ ସର୍ବଦା ପ୍ରସ୍ତୁତ । ତେଣୁ ନରହତ୍ୟା କରିସାରି ଅନେକ ଆଦିବାସୀ ନିଜେ ଆସି ପୋଲିସ ପାଖରେ ନିଜ କୃତ ଅପରାଧ ବିଷୟ ଜଣାଇ ଦେଇଥାନ୍ତି ।

ଆଦିବାସୀମାନଙ୍କର ଏହି ସ୍ୱଭାବ ପାଇଁ ଦାୟୀ ସେମାନଙ୍କର ସରଳ ଜୀବନ । ପ୍ରକୃତିର କୋଳରେ ସେମାନେ ପ୍ରତିପାଳିତ । ବନଭୂମିର ବୃକ୍ଷଲତା, ପୁଷ୍ପ, ନର୍ଝର ମଧ୍ୟରେ ବାସକରି ଏବଂ

ସଭ୍ୟଜଗତରେ ଜଟିଳତାଠାରୁ ଦୂରରେ ରହି ତାଙ୍କର ଆଚରଣରେ ବିଶେଷ କୌଣସି ପରିବର୍ତ୍ତନ ଆସି ନ ଥାଏ ।

ଆଦିବାସୀମାନେ କୌଣସି ନୂତନ ପରିବର୍ତ୍ତନର ପକ୍ଷପାତୀ ନୁହନ୍ତି । ସେମାନଙ୍କର ପୂର୍ବପୁରୁଷ ଯାହା କରି ଆସିଛନ୍ତି, ତାହା ଛାଡ଼ିବାକୁ ସେମାନେ ପ୍ରସ୍ତୁତ ନୁହନ୍ତି । ଏହି କାରଣରୁ ସଭ୍ୟ ମନୁଷ୍ୟଙ୍କୁ ବିଶ୍ୱାସ କରିବା କିମ୍ବା କୌଣସି ପ୍ରକାର ସଭ୍ୟ ସମାଜର ଆଚରଣ କରିବା ସେମାନଙ୍କ ପକ୍ଷରେ ବଡ଼ କଷ୍ଟକର । ଏପରି କି ବ୍ରିଟିସ୍ ସରକାରବହୁତ ଚେଷ୍ଟାକରି ମଧ୍ୟ ଜୁଆଙ୍ଗମାନଙ୍କୁ ଲୁଗା ପିନ୍ଧାଇ ପାରି ନ ଥିଲେ ।

ଆଦିବାସୀମାନଙ୍କର ଧର୍ମବୁଦ୍ଧି ଅତିଶୟ ପ୍ରଖର । ସେମାନେ ପ୍ରକୃତିର ପୂଜା କରନ୍ତି । ତାଙ୍କ ଗୃହପାଖରେ ଥିବା ନଦୀ, ପର୍ବତ, ଆକାଶ, ଅଗ୍ନି, ସର୍ପ ପ୍ରଭୃତି ସମସ୍ତ ପ୍ରକାଣ୍ଡ ଓ ଭୟଙ୍କର ପ୍ରାକୃତିକ ବସ୍ତୁକୁ ସେମାନେ ଦେବତା ଜ୍ଞାନରେ ପୂଜା କରନ୍ତି । କିନ୍ତୁ ସେମାନଙ୍କର ପ୍ରଧାନ ଦେବତା ମାଟି । ଏହା ଛଡ଼ା କୁଳଦେବତା ଏବଂ ଜାତିଦେବତାମାନଙ୍କୁ ମଧ୍ୟ ସେମାନେ ପୂଜା କରନ୍ତି । ଦେବତା-ମାନଙ୍କ ଛଡ଼ା ଭୂତ, ପ୍ରେତମାନଙ୍କୁ ମଧ୍ୟ ସେମାନେ ବିଶ୍ୱାସ କରନ୍ତି । ଏହି ଦେବତା ବା ଭୂତପ୍ରେତାଦିଙ୍କୁ ସନ୍ତୁଷ୍ଟ କରିବା ଲାଗି ସେମାନଙ୍କର ନାନା ପ୍ରକାର ଉତ୍ସବ ରହିଅଛି । ଉତ୍ସବ ବା ପର୍ବମାନଙ୍କରେ ଛେଳି, କୁକୁଡ଼ା ପ୍ରଭୃତି ସେମାନେ ବଳି ଦିଅନ୍ତି । କୌଣସି କୌଣସି ସ୍ଥାନରେ ଘୁଷୁରି, ମଇଁଷି ପ୍ରଭୃତିଙ୍କୁ ମଧ୍ୟ ବଳି ଦିଆଯାଏ । ପୂର୍ବେ ଦୁଇଗୋଟି ଜାତିମାନଙ୍କରେ କନ୍ଧମାନେ ନରବଳି ଦେଉଥିଲେ । ୧୮୩୫ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ଆଇନ କରି ନରବଳି ପ୍ରଥା ବନ୍ଦ କରିଦେଇଛନ୍ତି ।

ଧର୍ମ ଉପରେ ଗଭୀର ବିଶ୍ୱାସ ଆଦିବାସୀମାନଙ୍କୁ ସାଧୁଜୀବନ ଯାପନ କରିବାରେ ସାହାଯ୍ୟ କରେ । ସେମାନଙ୍କ ଦୃଢ଼ବିଶ୍ୱାସ ଅଛି ଯେ, ଦେବତା ଓ ଭୂତପ୍ରେତ ଅସନ୍ତୁଷ୍ଟ ହେଲେ ବାଘ ନେଇଯାଏ; ସାପଲଗାଏ, ଘରପୋଡ଼ି ପ୍ରଭୃତି ଦୁର୍ଯୋଗ ଉପସ୍ଥିତ ହୁଏ । ଆହୁରି ମଦ ପାନ କଲେ ଦେବତା ନିଶ୍ଚୟ ଖୁସିହେବେ ଏବଂ ସେହିପରି ନିଶ୍ଚୟ ଦଣ୍ଡ ମିଳିବ — ଏ ବିଶ୍ୱାସରେ ସେମାନଙ୍କର ପୂର୍ଣ୍ଣ



[ ଆଦିବାସୀ ନୃତ୍ୟ ]

ବିଶ୍ୱାସ; ତେଣୁ ପାପ କରିଦେଇ ଘୋଡ଼ାଇଦେବା ଅପେକ୍ଷା ଦଣ୍ଡ ପାଇଁ ସରଳ ଭାବରେ ସବୁ କଥା କହିଦେବା ସେମାନେ ଉଚିତ ମନେ କରନ୍ତି । ଏହା ଫଳରେ ସେମାନଙ୍କ ସମାଜରେ ଅନ୍ୟାୟ, ଅଧର୍ମ ଅତି ଅଳ୍ପ ହୁଏ ।

ଆଦିବାସୀମାନଙ୍କର ଜୀବନ ଅତି ଆନନ୍ଦମୟ । ପ୍ରାୟ ସମସ୍ତେ ଦିବସର ଯାବତୀୟ କର୍ମ ସାରି ସନ୍ଧ୍ୟାବେଳେ ଗ୍ରାମର ଆଖଡ଼ାଘରେ ମୃଦଙ୍ଗ, ମାଦଳ, ବଂଶୀ ପ୍ରଭୃତି ବଜାଇ କିଛି ସମୟ ଅତିବାହିତ କରନ୍ତି । ବିଶେଷତଃ ଗ୍ରାମର ଯୁବକ-ଯୁବତୀମାନଙ୍କର ଏକ ଆନନ୍ଦମୟ ମିଳନସ୍ଥାନ ହେଉଛି ଆଖଡ଼ାଘର । ସ୍ତ୍ରୀଲୋକମାନେ ଦଳ ଦଳ ହୋଇ ବନକୁ ଗଲା ଆସିଲାବେଳେ ଗୀତ ଗାଆନ୍ତି । ସନ୍ତାନଜନ୍ମ, ବିବାହ ପ୍ରଭୃତି ସାମାଜିକ ଉତ୍ସବରେ କର୍ମା ମାଘପର୍ବ, ଚଇତପର୍ବ, ମକରପର୍ବ, ଅଣିଶପର୍ବ ପ୍ରଭୃତି ଧର୍ମସମ୍ବନ୍ଧୀୟ ପର୍ବ-ଗୁଡ଼ିକରେ ଗ୍ରାମରେ ପୂଜା, ଭୋଜି ସଙ୍ଗେ ଯୁବକ-ଯୁବତୀମାନଙ୍କର ମିଳିତ ନୃତ୍ୟ ହୋଇଥାଏ । ମୁକ୍ତ ଆକାଶ ତଳେ ସେମାନେ ମନ ଆନନ୍ଦରେ ନାଚି ନାଚି ସାରା ରାତି ଗୀତ ଓ ବାଦ୍ୟ ମଧ୍ୟରେ କଟାଇ ଦିଅନ୍ତି ।

ଏହିପରି ସରଳ ଓ ଆନନ୍ଦମୟ ଜୀବନଯାପନ କରି ଏହି ପ୍ରକୃତି-ସନ୍ତାନମାନେ ଯେପରି ସ୍ୱାସ୍ଥ୍ୟ ଓ ସୁଖର ଅଧିକାରୀ, ଆଧୁନିକ ସଭ୍ୟ ସମାଜରେ ତାହା ଦେଖିବାକୁ ମିଳେ ନାହିଁ । ଧନ ନ ଥିଲେ ମଧ୍ୟ ସେମାନେ ଶାନ୍ତି ଓ ସନ୍ତୋଷ ବଳରେ ଏହି ଅପୂର୍ବ ସୁଖମୟ ଜୀବନ ଲାଭ କରିବାକୁ ସମର୍ଥ ହୋଇଅଛନ୍ତି ।

## ପ୍ରଶ୍ନ

୧ । ଆଦିବାସୀଙ୍କ ସାମାଜିକ ଜୀବନ ସମ୍ପର୍କରେ ଯାହା ଜାଣ ଲେଖ ।

୨ । ସରଳାର୍ଥ ଲେଖ—

ଏହିପରି ସରଳ ଓ ଆନନ୍ଦମୟ ଜୀବନ······ତାହା ଦେଖିବାକୁ ମିଳେ ନାହିଁ ।

୩ । ବିଶେଷ୍ୟକୁ ବିଶେଷଣ ଓ ବିଶେଷଣକୁ ବିଶେଷ୍ୟ ପଦରେ ପରିଣତ କରି ବାକ୍ୟରେ ବ୍ୟବହାର କର—
ପ୍ରଖର, ବିସ୍ମିତ, ସଭ୍ୟତା, ସଙ୍କୋଚ, ସ୍ପଷ୍ଟ, ପକ୍ଷପାତି, ଅସନ୍ତୁଷ୍ଟ ।

---

# ଓଡ଼ିଆ ପାଇକ

ଆଜି ଓଡ଼ିଶାରେ ଯେପରି ଲୋକପ୍ରତିନିଧିମୂଳକ ଗଣତନ୍ତ୍ର ଶାସନ ଚାଲିଛି, ପ୍ରଥମେ ତାହା ନ ଥିଲା । ଓଡ଼ିଶାର ଇତିହାସରେ ଅନଙ୍ଗଭୀମଦେବ, ନରସିଂହଦେବ, କପିଳେନ୍ଦ୍ରଦେବ ପ୍ରଭୃତି ସ୍ୱାଧୀନ ରାଜାମାନଙ୍କ ନାମ ସହିତ ତୁମ୍ଭେମାନେ ପରିଚିତ । ସେତେବେଳେ ଓଡ଼ିଶାର ନିକଟବର୍ତ୍ତୀ ପଡ଼ୋଶୀ ରାଜ୍ୟ ବଙ୍ଗ (ଗୌଡ଼) ବିଜୟନଗର ପ୍ରଭୃତି ମଧ୍ୟ ସ୍ୱାଧୀନ ଥିଲେ । ଏହି ସ୍ୱାଧୀନ ରାଜ୍ୟମାନେ ନିଜର ସ୍ୱାଧୀନତା ରକ୍ଷା ଲାଗି ଏବଂ ସମୟ ସମୟରେ ନିଜ ରାଜ୍ୟର ସୀମା-ବୃଦ୍ଧି ପାଇଁ ପରସ୍ପର ମଧ୍ୟରେ ଯୁଦ୍ଧ କରୁଥିଲେ; ତେଣୁ ସୈନ୍ୟବଳ ଉପରେ ଦେଶର ସ୍ୱାଧୀନତା ନିର୍ଭର କରୁଥିଲା ।

ଓଡ଼ିଶାର ସୈନ୍ୟବାହିନୀରେ ଅଶ୍ୱାରୋହୀ ସୈନ୍ୟମାନଙ୍କ ଅପେକ୍ଷା ପଦାତିକ ବା ପାଇକମାନଙ୍କର ସଂଖ୍ୟା ଅଧିକ ଥିଲା । ପାଇକମାନେ ସମସ୍ତେ ବେତନଭୋଗୀ ନଥିଲେ । ଆବଶ୍ୟକ ପଡ଼ିଲେ ଗ୍ରାମର ଯୁବକମାନେ ଯୁଦ୍ଧକୁ ବାହାରି ପଡ଼ୁଥିଲେ । ଗ୍ରାମରେ ଖେଳ-କସରତ୍ ସଙ୍ଗେ ସଙ୍ଗେ ନଳୀ, ବାଣ, ବର୍ଚ୍ଛା, ଧନୁଶର ପ୍ରଭୃତିର ବ୍ୟବହାର ଶିଖି ସେମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ରହୁଥିଲେ । କାଳକ୍ରମେ କୃଷି ସଙ୍ଗେ ସଙ୍ଗେ ଯୁଦ୍ଧ କରିବା ଏମାନଙ୍କର

ବ୍ୟବସାୟ ହୋଇଗଲା । ସେମାନେ ବଳବାନ୍, ବୀର, ସାହସୀ ଓ ନିର୍ଭୀକ ଥିଲେ । ଓଡ଼ିଶା ରାଜାଙ୍କ ଯୁଦ୍ଧବାର୍ତ୍ତା ଜଣାଇଦେବା ପାଇଁ ପର୍ବତରେ ନିଆଁ ଜାଳିବା, ଢୋଲ ବଜାଇବା, ଗଣ୍ଠି ଚଳାଇବା ପ୍ରଭୃତି କେତେଗୁଡ଼ିଏ ପ୍ରସିଦ୍ଧ ଉପାୟ ପ୍ରଚଳିତ ଥିଲା । ଯୁଦ୍ଧଇସାର ପାଇବା ମାତ୍ରେ ନାୟକ, ଗଡ଼ନାୟକ, ଦଳେଇ, ଦଳବେହେରା, ପାଇକରାୟ, ସାମନ୍ତରାୟ, ପାଟସାହାଣୀ, ବକ୍ସି, ସିଂହ ପ୍ରଭୃତି ସେନାପତି ଉପାଧିଧାରୀ



[ଯୁଦ୍ଧବେଶୀ ଓଡ଼ିଆ ପାଇକ]

ପାଇକନେତାମାନେ ନିଜ ଗ୍ରାମର ପାଇକମାନଙ୍କୁ ଠୁଳକରି ଯୁଦ୍ଧକୁ ବାହାରି ପଡ଼ୁଥିଲେ । ଦେଶ ଲୋକଙ୍କୁ ଶତ୍ରୁ ଉପଦ୍ରବରୁ ରକ୍ଷାକରିବା ଲାଗି ପାଇକମାନେ ଅକାତରରେ ପ୍ରାଣ ଦେଉଥିଲେ । ପୁଣି ଓଡ଼ିଶା ରାଜାଙ୍କ ପରିଚାଳନାରେ ଓଡ଼ିଶାର ଜୟପତାକା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଉଡ଼ାଇବାରେ ଏମାନେ ଥିଲେ ଅସଲ ଶକ୍ତି । ଖାରବେଳ, କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ, ମୁକୁନ୍ଦଦେବ ପ୍ରଭୃତି ଓଡ଼ିଆ ରାଜାମାନଙ୍କର ଦିଗ୍‌ବିଜୟର ବିବରଣୀ ପଢ଼ିଲେ ଓଡ଼ିଆ ପାଇକର ସାହସିକତା ଓ ଦେଶପ୍ରୀତିର ପରିଚୟ ମିଳିଥାଏ ।

୧୫୬୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ପରେ ୧୯୪୭ ପର୍ଯ୍ୟନ୍ତ ଓଡ଼ିଶାରେ ମୁସଲମାନ, ମରହଟ୍ଟା ଓ ଇଂରେଜମାନେ ଶାସନ ଚଳାଇଥିଲେ । ୩୭୫ ବର୍ଷର ଏହି ବିଦେଶୀ ଶାସନ କବଳରେ ଓଡ଼ିଶାର ଜାତୀୟ ସମ୍ମାନ, ସ୍ୱାଧୀନ ଚିନ୍ତା ଓ ଆର୍ଥିକ ଗୌରବ ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଥିଲା । ଓଡ଼ିଶାର ସେହି ବୀର ଖଣ୍ଡାୟତ ଓ ପାଇକମାନେ କଅଣ ନୀରବରେ ଏହି ବିଦେଶୀ ଶକ୍ତିର ଅତ୍ୟାଚାରର ମୁଣ୍ଡପାତି ବରଣ କରିଥିଲେ ?

ପାଇକମାନଙ୍କର ପ୍ରଧାନ ଶକ୍ତି ଥିଲେ ରାଜା । ରାଜାଙ୍କ ସମ୍ମାନ ରକ୍ଷା କରିବାକୁ ସେମାନେ ନିଜର ପବିତ୍ର କର୍ତ୍ତବ୍ୟ ବୋଲି ମନେ-କରୁଥିଲେ । ସେହି ରାଜା ନିଜର ସବୁ ଶକ୍ତି ହରାଇ ଖୋର୍ଦ୍ଧାରେ ସାଧାରଣ ଜମିଦାର ପରି ବାସ କରିବାରୁ ନେତା ଅଭାବରେ ପାଇକ-ଶକ୍ତି ଦୁର୍ବଳ ହୋଇଗଲା । ସେନାପତିମାନଙ୍କ ମଧ୍ୟରୁ କେହି କେହି ନିଜ ଜାଗିରରେ ଏବଂ ଅନ୍ୟ କେତେକ ବୈଦେଶିକ ସରକାରଙ୍କୁ ସାହାଯ୍ୟ କରିବା ଯୋଗୁଁ ପୁରସ୍କାର ପାଇ ସନ୍ତୁଷ୍ଟ ରହିଲେ ।

ତଥାପି ରାଜଭକ୍ତ ପାଇକମାନଙ୍କର ଅଭାବ ନ ଥିଲା । ସେମାନଙ୍କ ଆହ୍ୱାନରେ ଏବଂ ରାଜାଙ୍କ ନାମ ଶୁଣିବା ମାତ୍ରେ ଦଳ ଦଳ ହୋଇ ପାଇକ ଯୁଦ୍ଧକୁ ବାହାରି ପଡ଼ୁଥିଲେ । ଏହାକୁ ବିଦେଶୀ ସରକାର ବିଦ୍ରୋହ ବା ମେଳି କହି ଦମନ କରୁଥିଲେ । ଇଂରେଜ ରାଜତ୍ୱକାଳରେ ଖୋର୍ଦ୍ଧା, ଘୁମୁସର, ବାଣପୁର, କୁଜଙ୍ଗ, ପିପିଲି ପ୍ରଭୃତି ବହୁ ସ୍ଥାନରେ ଏହି ଧରଣର ମେଳି ହୋଇଥିଲା । ସମସ୍ତଙ୍କ ମଧ୍ୟରେ ଏକତା ନ ଥିବାରୁ ଏବଂ ସୁଶିକ୍ଷା ଅଭାବରୁ ଇଂରେଜମାନେ ନିଜ ତୋପ ଓ କମାଣ ବଳରେ ସେସବୁ ଦମନ କରିପାରିଥିଲେ ।

୧୮୧୭ ଖ୍ରୀଷ୍ଟାବ୍ଦରେ ଓଡ଼ଶାରେ ପାଇକମାନେ ଯେଉଁ ବିଦ୍ରୋହ କରିଥିଲେ, ତହିଁରେ ଇଂରେଜ ଶାସନ ଲୋପ ପାଇବାର ଆଶଙ୍କା ଉପସ୍ଥିତ ହୋଇଥିଲା । ଏହି ବିଦ୍ରୋହର ପ୍ରଧାନ ନେତା ଥିଲେ ବକ୍ସି ଜଗବନ୍ଧୁ ବିଦ୍ୟାଧର ।

ଇଂରେଜମାନଙ୍କ ପ୍ରଥମ ଆଗମନ କାଳରେ ବକ୍ସି ଜଗବନ୍ଧୁ ରୋଡ଼ଙ୍ଗ ନାମକ ଏକ ଜମିଦାରୀ ଭୋଗ କରୁଥିଲେ ଏବଂ ସରକାରଙ୍କ ପ୍ରାପ୍ୟ ରାଜସ୍ୱ ନିୟମିତଭାବେ ଦେଇ ଦେଉଥିଲେ; କିନ୍ତୁ କୃଷ୍ଣଚନ୍ଦ୍ର ସିଂହ ନାମକ ଜଣେ ବଙ୍ଗାଳୀ ଅଫିସରଙ୍କ ଷଡ଼ଯନ୍ତ୍ର ଯୋଗୁ ରାଜସ୍ୱ ବାକି ରହିବା ଅପରାଧରେ ରୋଡ଼ଙ୍ଗ ଜମିଦାରୀ ନିଲାମ ହୋଇଗଲା ଏବଂ ସେହି କୃଷ୍ଣଚନ୍ଦ୍ର ତାକୁ କିଣିଲେ । ବକ୍ସି ଜଗବନ୍ଧୁ ପ୍ରମାଣ ସହ ଦରଖାସ୍ତ କରି ମଧ୍ୟ ଇଂରେଜମାନଙ୍କଠାରୁ ସୁବିଚାର ପାଇପାରିଲେ ନାହିଁ । ସାରା ପାଇକଜାତି ବକ୍ସିଙ୍କ ପ୍ରତି ସରକାରଙ୍କର ଏହି ଅନ୍ୟାୟ ଅବିଚାର ଯୋଗୁ ଉତ୍ତେଜିତ ହୋଇଉଠିଲା । ଘୁମୁସରର କନ୍ଧମାନେ ସେମାନଙ୍କ ସହିତ ଯୋଗ ଦେଲେ । ବକ୍ସି ପ୍ରଚାର କଲେ ଯେ ଇଂରେଜମାନଙ୍କୁ ବିତାଡ଼ିତ ନ କଲେ ଦେଶରେ ନ୍ୟାୟ ଧର୍ମ ଆଉ ରହିବ ନାହିଁ ।

ବିଦ୍ରୋହୀମାନେ ପ୍ରଥମେ ବାଣପୁର ଥାନା ଲୁଟି କରି ପୁରୀରୁ ଇଂରେଜମାନଙ୍କୁ ତଡ଼ିଦେଲେ । ସେତେବେଳେ ରାଜା ମୁକୁନ୍ଦ ଦେବ ପୁରୀରେ ରହୁଥିଲେ । ବକ୍ସିଙ୍କ କଥାରେ ମୁକୁନ୍ଦ ଦେବ ମଧ୍ୟ ବିଦ୍ରୋହରେ ଯୋଗ ଦେଲେ । ବହୁ ଦିନ ପରେ ପୁଣି ଖଣ୍ଡା ଓ ଧନୁ ଶର ଧରି ପାଇକମାନେ ସହସ୍ର ସହସ୍ର ସଂଖ୍ୟାରେ ବାହାରି ଆସିଲେ । ସ୍ଥାନେ ସ୍ଥାନେ ସରକାରୀ ଘର, ଅଫିସ, ଖଜଣାଖାନା ସବୁ ଲୁଟି କରି

ପୋଡ଼ିଦେଲେ । ଇଂରେଜମାନେ ଲୁଚି ଲୁଚି ଅନ୍ୟ ସ୍ଥାନକୁ ପଳାୟନ କଲେ । ସେମାନଙ୍କ ମଧ୍ୟରେ ମଧ୍ୟ ଭାଳେଣି ପଡ଼ିଗଲା ।

ଶିକ୍ଷା ସଂଗଠନର ଅଭାବ ପାଇକମାନଙ୍କର କାଳ ହେଲା । ଯୁଦ୍ଧ ମଧ୍ୟ ଏକ ବିଦ୍ୟା । ମିଳିତ ହୋଇ ଠିକାଠିକ ମାତ୍ରାରେ ଯୁଦ୍ଧ କରିବାକୁ ହୁଏ । ଇଂରେଜ ସୈନ୍ୟମାନଙ୍କର ସେହିପରି ଶିକ୍ଷା ଓ ସଂଗଠନ ଥିଲା ଏବଂ ତାହା ସହିତ ଥିଲା ତୋପ ଓ କମାଣ, ତେଣୁ ପାଇକମାନେ ପରାସ୍ତ ହେଲେ । ବକ୍ସି ଘୁମୁସର ଜଙ୍ଗଲ ମଧ୍ୟକୁ ପଳାୟନ କଲେ । ଇଂରେଜମାନେ ବହୁ ଚେଷ୍ଟା କରି ମଧ୍ୟ ତାଙ୍କୁ ଧରିପାରିଲେ ନାହିଁ । ଶେଷରେ ୧୮୨୫ ଖ୍ରୀଷ୍ଟାବ୍ଦରେ ସେମାନେ ଘୋଷଣା କଲେ ଯେ ବକ୍ସି ଧରାଦେଲେ ତାଙ୍କୁ ଦଣ୍ଡ ଦିଆଯିବ ନାହିଁ, କିନ୍ତୁ ବୃତ୍ତି ଦିଆଯିବ । ବକ୍ସି ଏହା ଶୁଣି ନିଜେ ଆସି କଟକରେ ପରିଚୟ ଦେଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ମାସିକ ଟ ୧୫୦୲ ବୃତ୍ତି ପାଇ ରହିଲେ ।

ସ୍ୱାଧୀନତା ଲାଭ ପାଇଁ ୧୮୫୭ରେ ଭାରତର ସିପାହୀ ବିଦ୍ରୋହ ହୋଇଥିଲା । ତାହାର ୪୦ ବର୍ଷ ପୂର୍ବେ ଓଡ଼ିଶାର ପାଇକମାନେ ଇଂରେଜ ଶାସନ ବିରୁଦ୍ଧରେ ଉଠିଥିଲେ । ସମସ୍ତଙ୍କୁ ମିଳାଇ ଏହି ପାଇକ-ବିଦ୍ରୋହକୁ ଜୟଯୁକ୍ତ କରାଇ ପାରିଥିଲେ ହୁଏତ ୧୫୦ ବର୍ଷ ପୂର୍ବରୁ ଇଂରେଜ ଶାସନ ଲୋପ ପାଇଥାନ୍ତା; ମାତ୍ର ସଂଗଠନ ଅଭାବରୁ ତାହା ସମ୍ଭବ ହୋଇପାରିଲା ନାହିଁ । ତଥାପି ସ୍ୱାଧୀନତା ଲାଭ ପାଇଁ ଏକ ପ୍ରବଳ ଚେଷ୍ଟାରୂପେ ପାଇକ-ବିଦ୍ରୋହ ଓଡ଼ିଶା ଇତିହାସରେ ଏକ ପ୍ରଧାନ ଘଟଣା ହୋଇ ରହିବ । ସେହି ବିଦ୍ରୋହର ନେତା ବକ୍ସି ମଧ୍ୟ ଚିରସ୍ମରଣୀୟ ହୋଇ ରହିବେ ।

ବର୍ତ୍ତମାନ ତାଙ୍କ ନାମର ସ୍ମୃତିରକ୍ଷା ଲାଗି ଭୁବନେଶ୍ୱର କଲେଜର ନାମ ବକ୍‌ସି ଜଗବନ୍ଧୁ ବିଦ୍ୟାଧର କଲେଜ ରଖାଯାଇଛି । ଖୋର୍ଦ୍ଧା ପାଇକ ବିଦ୍ରୋହର ଅନ୍ୟତମ ପ୍ରସିଦ୍ଧ ନେତା ଜୟୀ ରାଜଗୁରୁଙ୍କ ନାମାନୁସାରେ ଖୋର୍ଦ୍ଧାରେ ମଧ୍ୟ ଏକ କଲେଜ ଓ ପୁସ୍ତକାଗାର ପ୍ରତିଷ୍ଠିତ ହୋଇଅଛି ।

## ପ୍ରଶ୍ନ

୧ । ବକ୍‌ସି ଜଗବନ୍ଧୁ ଇଂରେଜମାନଙ୍କ ବିରୁଦ୍ଧରେ କାହିଁକି ବିଦ୍ରୋହ ଘୋଷଣା କଲେ ଓ ତାହାର ଫଳାଫଳ କଅଣ ହେଲା ବର୍ଣ୍ଣନା କର ।

୨ । ପ୍ରାଚୀନ ଯୁଦ୍ଧପ୍ରଣାଳୀ ସମ୍ପର୍କରେ ଏହି ପ୍ରବନ୍ଧରୁ ଯାହା ଶିକ୍ଷାଲାଭ କଲ, ନିଜ ଭାଷାରେ ଲେଖ ।

୩ । "ତଥାପି ସ୍ୱାଧୀନତା······ପ୍ରଧାନ ଘଟଣା ହୋଇ ରହିବ ।"
—ଏହାକୁ ବୁଝାଇ ଦିଅ ।

୪ । ବିଶେଷ୍ୟକୁ ବିଶେଷଣ ଏବଂ ବିଶେଷଣକୁ ବିଶେଷ୍ୟ ପଦରେ ପରିଣତ କର—

ପ୍ରତିଷ୍ଠିତ, ସ୍ମରଣୀୟ, ଆଶଙ୍କା, ପୁରସ୍କାର, ଉତ୍ତେଜିତ ।

---

# ରୂପମୟୀ ଚିଲିକା

ବ୍ରହ୍ମପୁରରୁ କଟକ ଅଭିମୁଖରେ ରେଳରେ ଆସୁଥିବା ସମୟରେ ଛତ୍ରପୁର, ଗଞ୍ଜାମ ପ୍ରଭୃତି କେତେଗୋଟି ଷ୍ଟେସନ ପରେ ପଡ଼େ ରମ୍ଭା । ଷ୍ଟେସନ ଛାଡ଼ି ଖୋଲା ଜାଗାକୁ ଆସିଗଲେ ଡାହାଣ ପଟକୁ ଦେଖାଯାଏ ବିସ୍ତୃତ ଜଳରାଶି । ଏପରି କି ସ୍ଥାନେ ସ୍ଥାନେ ପାଣି

ମାଡ଼ିଆସିଛି ରେଳରାସ୍ତାର ଅତି ନିକଟକୁ । ଏ ତ ସମୁଦ୍ର ନୁହେଁ, କାରଣ ସମୁଦ୍ରରେ ବଡ଼ ବଡ଼ ଢେଉ ଉଠେ, ଘୋ ଘୋ ଶବ୍ଦ ଭିତରେ ଢେଉ ଭାଙ୍ଗି ପଡ଼ୁଥାଏ । ଏଠି କିନ୍ତୁ ଦେଖିବାକୁ ମିଳେ ଶାନ୍ତ ଜଳରାଶି; ତରଙ୍ଗଗୁଡ଼ିକ ଆକୃତିରେ କ୍ଷୁଦ୍ର ଓ ପ୍ରଚଣ୍ଡ ଶବ୍ଦହୀନ । କିନ୍ତୁ ଏତେ ନୀଳରଙ୍ଗର ଜଳ ଏଠାକୁ ଆସିଲା କେଉଁଠାରୁ ? ଏହି ବିସ୍ତୃତ ଜଳରାଶି ହିଁ ଚିଲିକା ହ୍ରଦ ନାମରେ ପରିଚିତ ।

ରେଳ ଉପରୁ ଚିଲିକା ଦେଖିବାକୁ ଖୁବ୍ ସୁନ୍ଦର । ନୀଳବର୍ଣ୍ଣର ଜଳ ଉପରେ ସୂର୍ଯ୍ୟକିରଣ ପଡ଼ି ଚକ୍ ଚକ୍ କରୁଥାଏ । ଦୂରରେ ଚକ୍ରବାଳ ଉପରେ ଦିଶେ ଧାଡ଼ିଏ ଗଛର ସୂକ୍ଷ୍ମ ସବୁଜରେଖା । ଆକାଶରେ ଫିକା ନୀଳ ଦେହରେ ଏହି ଶ୍ୟାମଳ ରେଖାଟି ଚିତ୍ରକରର ହାତକାମ ଭଳି ଦିଶେ । ପାଣିରେ କେତେ ଜାତିର ପକ୍ଷୀ ଭାସୁଥାଅନ୍ତି । ଢେଉରେ ଦୋହଲି ଦୋହଲି ଆନନ୍ଦରେ ପହଁରୁଥାନ୍ତି ସେମାନେ । ଆରେ, ସେଇଟା ଦୂରରେ କଣ ଧଳା ଦିଶୁଛି ? ଟିକିଏ ପାଖକୁ ଆସିଗଲା, ଜଣାଗଲା ଗୋଟିଏ ନୌକା; ପାଲ ଉଡ଼ାଇଦେଇ ଚାଲିଛି ? ରେଳଲାଇନ ପାଖେ ପାଖେ କେତେ ପ୍ରକାର ମାଛମରା ଯନ୍ତ୍ର, ବାଉଁଶ ଯନ୍ତା ବା ଜାଲ ବସିଛି ଧାଡ଼ି ଧାଡ଼ି ହୋଇ । ମାଛ ତା ଭିତରକୁ ପଶେ ଅନାୟାସରେ; କିନ୍ତୁ ବାହାରିପାରେ ନାହିଁ । ବେଳେ ବେଳେ ଦେଖାଯାଏ, ଚିଲିକା ଦୁଇ ତିନି ଭାଗ ହୋଇଯାଇଛି । ମଝିରେ ଥିବା ଛୋଟ ପାହାଡ଼ଟି ଗଛପତ୍ରରେ ଦିଶୁଛି ସୁନ୍ଦର ଓ ଶ୍ୟାମଳ । ଗଛର ନାଲି ପତ୍ର ବା ନାଲି ଫୁଲସବୁ ମଧ୍ୟ କେବଳ ବର୍ଣ୍ଣ ଆକାରରେ ଜଣାପଡ଼େ । ଚିଲିକା ଭିତରେ ଜଟିଆ, ମୋଲଗା, ଚଢ଼େଇହଗା ପ୍ରଭୃତି ଏହିପରି କେତୋଟି ଦ୍ୱୀପଶୈଳ ରହିଅଛି । ଖାଲି ପାଣି ଆଉ ଚଢ଼େଇ ଦେଖି ମନ ଫେରିଆସିଲା ରେଳକୁ

ଦୃଶ୍ୟଟା ଠିକଏ ବଦଳିଯାଏ, ଦିଶିଯାଏ ଚିଲିକାର ନୂତନ ରୂପ । ସବୁଠାରୁ ଖୁସି ଲାଗେ ଚିଲିକାର ଲୁଚକାଳି ଖେଳ ଦେଖିବାକୁ । ରେଳ ଗଲାଣି ଚିଲିକା କୂଳର ଜଙ୍ଗଲ-ପର୍ବତ ମଧ୍ୟ ଦେଇ । ଆଖି ଆଗରେ ଗଛ ପତ୍ର, ପଥର ସବୁ ଆସିଗଲେ ଚିଲିକା ଲୁଚିଯାଉଛି, ସମାନ ଭୂମିରେ ପୁଣି ସେ ଦିଶୁଛି । ଥରେ ଥରେ ସାନ ପଥରଗଦା ଉହାଡ଼ରେ ଲୁଚିଥିଲେ ସାଙ୍ଗେ ସାଙ୍ଗେ ପୁଣି ଦେଖାଦେଉଛି, ଆଉ ଥରେ ଯେତେବେଳେ ପଥରପଦା ପଡ଼ୁଛି, ଯାତ୍ରୀ ଆଶାକରୁଛି; ହେଇ ସରିଲା, ହେଇ ସରିଲା; କିନ୍ତୁ ତଥାପି ସରୁନାହିଁ । କେତେବେଳେ ସରିକି ଘବୁ ଘବୁ ସରିଯାଉଛି, ଦିଶିଯାଉଛି ରୂପମୟୀ ଚିଲିକା । ଏହିପରି କଉତୁକ ଲାଗିଥାଏ ।

ଚିଲିକାକୁ ଆହୁରି ନିକଟରୁ ଦେଖିବାକୁ ଇଚ୍ଛା ହେବା ନିଶ୍ଚୟ । ଅତଏବ ରେଳ ଛାଡ଼ିବାକୁ ହେବ । ବାଲୁଗାଁ ଷ୍ଟେସନରେ ଓହ୍ଲାଇଗଲେ ସୁବିଧା । ଷ୍ଟେସନରେ ଓହ୍ଲାଇବା ମାତ୍ରେ ମିଳେ ମାଛ ଗନ୍ଧ । କେତେ ପ୍ରକାର ମାଛ—ସାନ, ବଡ଼, ସଜ, ଶୁଖିଲା । କଞ୍ଚା ମାଛକୁ ବରଫ ଦେଇ ରେଳରେ କଲିକତା ପର୍ଯ୍ୟନ୍ତ ପଠାଯାଏ । ଚିଲିକାର ଇଲିଶି ମାଛ କଲିକତାରେ ବହୁତ ବିକ୍ରୀ ହୁଏ । ଏହି ମାଛସବୁକୁ ଚିଲିକା ଜନ୍ମ ଦିଏ, ପୋଷି ରଖିଥାଏ ମନୁଷ୍ୟର ଖାଦ୍ୟ ପାଇଁ । କେଉଟମାନେ ଦିନବେଳେ ତ ମାଛ ମାରନ୍ତି, ରାତିରେ ମଧ୍ୟ ନୌକାମାନଙ୍କରେ ମଶାଲ ଜାଳି ଦିଅନ୍ତି । ଆଲୋକ ଲୋଭରେ ନୌକା ଭିତରକୁ ଡେଇଁପଡ଼ି ମାଛମାନେ ପ୍ରାଣ ହରାଇଥାନ୍ତି । ଆଲୋକର ଲୋଭ ହେଉ, ଟଙ୍କା ପଇସାର ଲୋଭ ହେଉ, ଯେ କୌଣସି ଦ୍ରବ୍ୟ ପାଇଁ ଲୋଭ ହେଉ, ଲୋଭ ମାତ୍ରେ ଅନିଷ୍ଟକର । କେବଳ ଜ୍ଞାନର ଲୋଭରେ ଅନିଷ୍ଟ ନାହିଁ ।।

ଚିଲିକା କୂଳରେ ତାଳ, ନଡ଼ିଆ, ଆମ୍ବ, ପଣସ, ଗୁଆ, ଲଙ୍କାଆମ୍ବ ପ୍ରଭୃତି ଗଛ ବହୁ ସଂଖ୍ୟାରେ ଦେଖାଯାଏ । ତାହା ଛଡ଼ା ସନ୍ତସନ୍ତିଆ ସ୍ଥାନରେ କିଆ, କେତକୀ ଓ ବେତକାଶାଦି ଗଛଗୁଡ଼ିକ ଘଞ୍ଚଭାବରେ ବଢ଼ିଥାଏ । ସେହି ଗଛଗହଳି ଭିତରେ ମଧ୍ୟେ ମଧ୍ୟେ ଗାଁସବୁ ଧାନକ୍ଷେତର ପଣତ ବିସ୍ତାଇ କେତେ ସୁନ୍ଦର ଦେଖାଯାଏ । ଭାଲେରୀ ପର୍ବତରେ ଓ ତାର ପାଦଦେଶରେ ଅଛି ଜଙ୍ଗଲ । ତାହାର ଭିତରେ କେତେ ଭଙ୍ଗା ଦେଉଳ, କେତେ ପୁରୁଣା ଭଙ୍ଗା ଦୁର୍ଗ ଦେଖାଯାଏ । କୂଳରୁ ତିନି ଚାରି ମାଇଲ ଦୂରରେ ବାଣପୁର । ସେଠାରେ ଭଗବତୀଙ୍କ ମନ୍ଦିର ପ୍ରସିଦ୍ଧ ।

ଚିଲିକାକୁ ଯାଇ ତା ଭିତରକୁ ନ ଗଲେ ଚିଲିକାର ଦୃଶ୍ୟ ସମ୍ପୂର୍ଣ୍ଣ ଉପଭୋଗ କରିହୁଏ ନାହିଁ । ଚିଲିକା ଭିତରେ ଅନେକ ଗୁଡ଼ିଏ ଶ୍ରେଷ୍ଠ ବଡ଼ ଦ୍ୱୀପ ଅଛି । ସେ ମଧ୍ୟରେ ପାରିକୁଦ ଓ ମାଲୁଦ ପ୍ରଧାନ । ପ୍ରତିଦିନ ବାଲୁଗାଁରୁ ପାରିକୁଦକୁ ନୌକାରେ ଡାକ-ଚଳାଚଳ ହୁଏ । ଏହି ନୌକାରେ ଯିବା ସୁବିଧାଜନକ । ସ୍ୱତନ୍ତ୍ରଭାବେ ଭଡ଼ା କରି ଡଙ୍ଗା ବା ଲଞ୍ଚ୍ ନେଇ ଗଲେ ମଧ୍ୟ ହେବ । ପାଣିରେ ଆହୁଲା ସାହାଯ୍ୟରେ ନୌକା ଚାଲେ । ଚାରିଆଡ଼େ ନାନା ଜାତିର ପକ୍ଷୀ କେତେ ପ୍ରକାର ଶବ୍ଦ କରି ଚିଲିକାକୁ ମୁଖରିତ କରୁଥାନ୍ତି । ମନେହୁଏ, ଚିଲିକା ସେମାନଙ୍କୁ ଆଶ୍ରୟ ଦେଇଥିବାରୁ ସେମାନେ ତାର ଗୁଣଗାନ କରୁଅଛନ୍ତି । ଧାଡ଼ି ଧାଡ଼ି ବଗ, ହଂସ, ମାଛରଙ୍କା ଓ ଆହୁରି କେତେ ପ୍ରକାର ଜଳଚର ପକ୍ଷୀ । ନାନା ବର୍ଣ୍ଣରେ ବିଚିତ୍ର ତାଙ୍କର ଦେହ, ମୁଣ୍ଡ ଓ ଡେଣାର ଶୋଭାରେ ଚିଲିକା ମଣ୍ଡିତ ହୋଇ ପଡ଼ି ଦିଶେ । ନାନା ପ୍ରକାର ମାଛ ସଙ୍ଗରେ ଅନ୍ୟାନ୍ୟ ଜଳଜୀବଙ୍କର କ୍ରୀଡ଼ା ବାସ୍ତବିକ ଚିତ୍ତାକର୍ଷକ । କୋଟି କୋଟି ଜୀବଙ୍କୁ

ଆହାର ଯୋଗାଇ ମାତୃରୂପିଣୀ ଏହି ଚିଲିକା କେଉଁ କାଳରୁ ରହିଅଛି, ତାହା କିଏ କହିବ ?

ଓଡ଼ିଶାର ପୁରୀ ଜିଲାରେ ଚିଲିକା ହ୍ରଦ ଅବସ୍ଥିତ । ଆକାରରେ ଏହା ବେଶୀ ବଡ଼ ନୁହେଁ । ବର୍ଷାଦିନରେ ନଦୀମାନଙ୍କର ପାଣି ଯୋଗୁଁ ବୃଦ୍ଧିପାଇଯାଏ, ନଚେତ୍ ଏହାର ସାଧାରଣ ଦୈର୍ଘ୍ୟ ଓ ପ୍ରସ୍ଥ ଯଥାକ୍ରମେ ୪୫ ମାଇଲ ଓ ୧୦ ମାଇଲ । ଏତେ କ୍ଷୁଦ୍ର ହେଲେ ମଧ୍ୟ ଏହା ଭାରତର ଗୋଟିଏ ବଡ଼ ହ୍ରଦ । ଓଡ଼ିଶାରେ ଚିଲିକା ଅପେକ୍ଷା ଆକାରରେ କ୍ଷୁଦ୍ର ଆଉର ଏକ ହ୍ରଦ ଅଛି । ତାହାର ନାମ ଅଂଶୁପା । ଚିଲିକା ଓ ଅଂଶୁପାକୁ ଦୁଇ ଭଉଣୀ ରୂପେ କଳ୍ପନା କରାଯାଇପାରେ । ଆକାର ସାନ ବଡ଼ ହେବାରୁ ତାଙ୍କର ଖ୍ୟାତି ସାନ ବା ବଡ଼ ହୋଇ ନାହିଁ । ପ୍ରକୃତରେ ଏ ଦୁଇଟି ପ୍ରାକୃତିକ ଜଳଭଣ୍ଡାର ଓ ନାନାବିଧ ଦୃଶ୍ୟର ମଧ୍ୟ ଭଣ୍ଡାର । ତେଣୁ ପରିଦର୍ଶକମାନଙ୍କ ପକ୍ଷରେ ଏଗୁଡ଼ିକ ସୌନ୍ଦର୍ଯ୍ୟ ଉପଭୋଗ କରିବାର ସ୍ଥାନ । ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ଓଡ଼ିଆରେ ବହୁତ କବିତା ରଚିତ ହୋଇଅଛି । ସେ ମଧ୍ୟରେ ରାଧାନାଥଙ୍କ ଚିଲିକା କାବ୍ୟ ପ୍ରସିଦ୍ଧ । ଏହି ରୂପମୟୀ ଚିଲିକାର ସୌନ୍ଦର୍ଯ୍ୟ ଦେଖି କବି କହିଛନ୍ତି—

"କେତେ ଥର ଦେଖିଅଛି ଏହିମାନ
ମାତ୍ର ପ୍ରତିଥର ଦିଶେ ଆନ ଆନ ।
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରକାଶ
ସୁନ୍ଦରପଣର ଚିରନ୍ତନ ଗତି ।
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ,
ଯେତେ ଦେଖିଥିଲେ ନୂଆ ଦିଶୁଥାଇ ।"

କବି ଓ ସୌନ୍ଦର୍ଯ୍ୟ-ଗ୍ରାହକଙ୍କ ଦୃଷ୍ଟିରେ ବାସ୍ତବିକ ଚିଲିକା ଉତ୍କଳ-ଲକ୍ଷ୍ମୀଙ୍କର 'ବିଳାସଦର୍ପିକା' ଓ 'ଶୋକଯାତଶୋଷ୍ଠ ଅପ୍‌ସରାଭୁବନ' ।

## ପ୍ରଶ୍ନ

୧ । ରେଳ ଉପରୁ ଚିଲିକାର ଦୃଶ୍ୟ ନିଜ ଭାଷାରେ ଲେଖ ।

୨ । "ଲୋଭ ମାତ୍ରେ ଅନିଷ୍ଟକର, କେବଳ ଜ୍ଞାନର ଲୋଭରେ ଅନିଷ୍ଟ ନାହିଁ"—ଏହାର ସରଳାର୍ଥ ବୁଝାଅ ।

୩ । ଚିଲିକା କାହିଁକି 'ଶୋକଯାତଶୋଷ୍ଠ ଅପ୍‌ସରାଭୁବନ' ବୋଲି ଅଭିହିତ ?

୪ । ବ୍ୟାଖ୍ୟା ଲେଖ—
"ସୁନ୍ଦରେ ତୃପ୍ତି ହି······ହିଶୁଥାଇ ।"

---

# ସାଗର ଯାହାର ଖେଳଘର

ସମୁଦ୍ର କୂଳରେ ଜେନୋଆ ସହର । କେଡ଼େ ବଡ଼ ସମୁଦ୍ର, ଅଥଳଥଳ ପାଣି, କେଡ଼େ କେଡ଼େ ଢେଉ । ସେହି ପାଣି ଉପରେ ଅଖାଳ ଉଡ଼ାଇ ଡୋଇତ ସବୁ ଆସୁଛି । ଆହୁରି କେତେ ବୋଇତ ବନ୍ଦରରୁ ବାହାରି ପତାକା ଉଡ଼ାଇ ଦୂରକୁ ଦୂରକୁ ଯାଇ ଲୁଚି ଯାଉଛନ୍ତି । ସମୁଦ୍ରପାଣି ଅକାତ ହେଲେ ମଧ୍ୟ ତାହାରି ଗୁଣ୍ଡ ଉପରେ ଢେଉ କାଟି ମନୁଷ୍ୟର ହାତଗଢ଼ା ନୌକା, ଡୋଇତ, ଜାହାଜ ସବୁ ଗର୍ବରେ ବୁଲୁଛନ୍ତି । ସମୁଦ୍ର ତାର ଢେଉ-ହାତରେ ସନ୍ଧ-ଜୋର୍ କରି ଗୁପ୍ଚୁଡ଼ାଏ ଦେବ, ତାହାହେଲେ ଗୋଟିଏ ମଣିଷ କଅଣ, କେତେ ମଣିଷ ଏକାବେଳେ ଜୀବନ ହରାଇବେ । ତଥାପି

ମନୁଷ୍ୟ ତାହାର ଉପରେ ନାଚ କରିବାକୁ ଧାଇଁଛି । ତାହା ମନରେ ଭୟ ନାହିଁ । ଆନନ୍ଦରେ ସେ ଫାନ୍ଦି ପଡ଼ୁଛି, ଗୀତ ଗାଉଛି । କେତେ ଦୂର ଦେଶକୁ ସେ ଯାଉଛି, କେତେ ଦୂର ଦେଶରୁ ଫେରୁଛି । ନୂଆ ଦେଶର ନୂଆ ଲୋକଙ୍କ ସହିତ ମିଶି ନୂଆ କଥା ଶିଖୁଛି, ଦେଖୁଛି । ପୁଣି ସାଗରଲହରୀ ସହ ଦୋଳି ଖେଳି ଖେଳି ନିଜ ଦେଶ ଲୋକଙ୍କୁ ସେ କଥା ଶୁଣାଇ ଆନନ୍ଦ ପାଉଛି । ଇଟାଲୀର ଜେନୋଆ ସହରର ବନ୍ଦରରେ ନିତି ଦିନ ଏହି ଖେଳ ଚାଲିଛି । ଧନ୍ୟ ମନୁଷ୍ୟର କୌତୂହଳ, ଧନ୍ୟ ତାର ଅନୁସନ୍ଧିତ୍ସା ।

ପ୍ରାୟ ସାଢ଼େ ଚାରି ଶହ ବର୍ଷ ତଳେ ଜେନୋଆର ଏହି ଖେଳ ଲକ୍ଷ୍ୟ କରୁଥିଲା ଜଣେ ଯୁବକ । ପାଲଟେଣା ଜାହାଜ ଆସିଲା ଗଲାବେଳେ ମନ ତାର ଉଚ୍ଛନ୍ନ ହୋଇ ଉଠୁଥାଏ । ବେଳେ ବେଳେ ସେ ନାବିକମାନଙ୍କୁ ପଚାରି ଅନ୍ୟାନ୍ୟ ଦେଶର ସମ୍ବାଦ ବୁଝୁଥାଏ ।

ଭାରତବର୍ଷ ୟୁରୋପରୁ ବହୁତ ଦୂରରେ ପୂର୍ବକୁ ରହିଅଛି । କିନ୍ତୁ ଯୁବକ କ୍ରିଷ୍ଟୋଫର୍ କଲମ୍ବସ୍ ଭାବୁଥାନ୍ତି ପଶ୍ଚିମବାଟେ ଯିବାକୁ । ସେତେବେଳକୁ ଲୋକେ ପୃଥିବୀ ଗୋଲ ହୋଇଥିବ ବୋଲି ବିଶ୍ୱାସ କରି ଆସୁଥାନ୍ତି । କଲମ୍ବସ୍ ଆହୁରି ଦୂରକୁ ଯିବାକୁ ସ୍ଥିର କରିଥାଆନ୍ତି ଯେ, ଗୋଲାକାର ପୃଥିବୀରେ ପଶ୍ଚିମ ଅଭିମୁଖରେ ଯାଇ ଯାଇ ଲୋକ ପୂର୍ବଦିଗର ଦେଶମାନଙ୍କରେ ପହଞ୍ଚି ପାରିବ । କିନ୍ତୁ କେତେ ଦିନ ଲାଗିବ କିଏ କହିବ ? ଯାହାର ଜାହାଜ ଅଛି, ସେ କଅଣ ଏଡ଼େ ମୂର୍ଖ ହୋଇଛି ଯେ, ସେ ଦରିଦ୍ର କଲମ୍ବସ୍‌ର ଏହି ଖେଳ ପାଇଁ ତାହା ଦେଇଦେବ ? ନୂଆ ଦେଶରେ ପହଞ୍ଚି ବାଣିଜ୍ୟ ବ୍ୟବସାୟ କରିବା ଲାଗି ସିନା ମାଲିକମାନେ ଜାହାଜ ରଖିଛନ୍ତି, ଏପରି ଗୋଟିଏ ଅନିଶ୍ଚିତ ଲକ୍ଷ୍ୟରେ କିଏ ସାହାଯ୍ୟ କରିବ ?

ଥରେ ସମୁଦ୍ରରେ ଯାତ୍ରା କଲାବେଳେ ତାଙ୍କର ନୌକାଟି କୂଳରେ ଅଦୂରରେ ବୁଡ଼ିଗଲା । ଭାଗ୍ୟକ୍ରମେ ସେ ଆସି ପର୍ତ୍ତୁଗାଲ ଦେଶରେ ଯାଇ ପହଞ୍ଚିଲେ । ସେତେବେଳେ ପର୍ତ୍ତୁଗାଲ ସାମୁଦ୍ରିକ ନୌ-ବାଣିଜ୍ୟରେ ବହୁତ ଉନ୍ନତ କରିଥିଲା ଏବଂ ସେ ଦେଶର ନାବିକମାନେ ସର୍ବଦା ବିଦେଶ ଯାତ୍ରା କରୁଥିଲେ । କଲମ୍ବସ୍ ଭାବିଥିଲେ ଯେ, ସେ କୌଣସି ଧନୀ ସୌଦାଗରଙ୍କୁ ତାଙ୍କ ମତରେ ଅବଶ୍ୟ ରାଜି କରାଇପାରିବେ



[ କ୍ରିଷ୍ଟୋଫର୍ କଲମ୍ବସ୍ ]

ତେଣୁ ସେ ଲିସ୍‌ବନ ନଗରରେ ବାସ କରିବାକୁ ଲାଗିଲେ । ନକ୍ସା ଓ ମାନଚିତ୍ର ଅଙ୍କନ କରି ସେ ଚଳୁଥାନ୍ତି । ସୁବିଧା ପାଇଲେ ନାବିକ ଓ ସୌଦାଗରମାନଙ୍କୁ ସେ ନିଜ କଥା ଓ ମତ କହୁଥାନ୍ତି । ସମସ୍ତେ ଶୁଣନ୍ତି ଏବଂ ହସିଦିଅନ୍ତି, ସତେ ଯେପରି ଅତ୍ୟନ୍ତ ଅର୍ଥହୀନ ଏହି ଯୁବକର ଉକ୍ତି ।

ଶେଷରେ କଲମ୍ବସ୍ ଲିସ୍‌ବନ୍ ଛାଡ଼ି ସ୍ପେନକୁ ଗଲେ । ସ୍ପେନ ସେତେବେଳେ ସାଗର ମଧ୍ୟରେ ଏକ ଶ୍ରେଷ୍ଠ ଶକ୍ତି । ତାଙ୍କଠାରୁ ସମସ୍ତ

ବିଷୟ ଶୁଣି ସ୍ପେନ୍‌ର ରାଜା ଫର୍ଡିନାଣ୍ଡ୍ ତାଙ୍କୁ ଆଶା ମଧ୍ୟ ଦେଲେ । ରାଣୀ ଇସାବେଲା କଲମ୍ବସ୍‌ଙ୍କ କଥାରେ ଅତିଶୟ ପ୍ରୀତ ହୋଇ ତାଙ୍କ ପକ୍ଷରୁ ରାଜାଙ୍କୁ ସବୁ ସୁବିଧା କରିଦେବା ଲାଗି କହୁଥାନ୍ତି । କଲମ୍ବସ୍ ବାରମ୍ବାର ରାଜଭବନକୁ ଆସି କ୍ରମେ ରାଣୀ ଇସାବେଲାଙ୍କର ଅତି ପ୍ରିୟ ହେବା ସଙ୍ଗେ ସଙ୍ଗେ ଆଶା ପୂର୍ଣ୍ଣ ହେବ ଭାବି ଅନେକ ପ୍ରକାର ଭାବନାରେ ଆନନ୍ଦିତ ହୋଇ ଉଠୁଥାଆନ୍ତି । ଏଣେ ରାଜା ଆଜି କାଲି କରି ସମୟ ଗଡ଼ାଉଥାଆନ୍ତି । ଶେଷରେ ବିଳମ୍ବ ଅସହ୍ୟ ହେବାରୁ କଲମ୍ବସ୍ ନିରାଶ ହୋଇ ଫ୍ରାନ୍‌ସର ରାଜାଙ୍କୁ ତାଙ୍କ ମତରେ ରାଜି କରାଇବାକୁ ଚେଷ୍ଟା କରିବା ପାଇଁ ସ୍ପେନ୍ ଛାଡ଼ି ବାହାରିଲେ ।

"ପର୍ତ୍ତୁଗାଲ ଗଲା, ସ୍ପେନ୍ ଗଲା, କୌଣସିଠାରେ ଲୋକ ମୋ କଥାର ମର୍ଯ୍ୟାଦା ରଖିଲେ ନାହିଁ । ଫ୍ରାନ୍‌ସର ମଧ୍ୟ ନୌକା ଓ ନାବିକ ଅଛନ୍ତି; କିନ୍ତୁ ସେମାନେ କଅଣ ମୋ ଆଶା ପୂର୍ଣ୍ଣ କରିବେ ? କେଜାଣି ଭଗବାନଙ୍କର ଇଚ୍ଛା । ତଥାପି ଚେଷ୍ଟା ତ କରିବାକୁ ହେବ । ସମସ୍ତେ କଅଣ ସମାନ ହୋଇଛନ୍ତି ?"—ଏହିପରି ଭାବି ଭାବି କଲମ୍ବସ୍ ଚାଲିଥାନ୍ତି । ସେତେବେଳେ ପଛରୁ ସ୍ପେନ୍ ରାଜାଙ୍କ ଅଶ୍ୱାରୋହୀ ଦୂତ ଆସି ତାଙ୍କୁ ଅଟକାଇଲେ । ରାଣୀଙ୍କ ଜିଦ୍ ଯୋଗୁଁ ରାଜା ତାଙ୍କୁ ଫେରିବାକୁ ଅନୁରୋଧ କରିଛନ୍ତି ଏବଂ ବିଶ୍ୱାସ ଦେଇଛନ୍ତି ଚଞ୍ଚଳ ଜାହାଜ ବ୍ୟବସ୍ଥା କରାଇଦେବାକୁ ।

ତେଣୁ ପୁନ୍ତ ଥରେ ଆଶା ଧରି ପୁଣି ଥରେ କଲମ୍ବସ୍ ଫେରିଲେ । ତଥାପି ସବୁ କଥା ହେଉ ହେଉ ଆହୁରି କେତେମାସ ବିଳମ୍ବ ହେଲା । ଅବଶେଷରେ ୧୪୯୨ ଖ୍ରୀଷ୍ଟାବ୍ଦରେ ସେଣ୍ଟ୍ ମେରିଆ, ପିଣ୍ଟ୍, ନିନା ନାମକ ତିନୋଟି ଜାହାଜର ଅଧ୍ୟକ୍ଷ ରୂପେ ସ୍ପେନ୍‌ର ପତାକା ଉଡ଼ାଇ

କଲମ୍ବସ୍ ଭୂମଧ୍ୟସାଗର ଡ଼େଇଁ ବିଶାଳ ଆଟଲାଣ୍ଟିକ୍ ମହାସାଗର ବକ୍ଷରେ ପଶ୍ଚିମ ଅଭିମୁଖରେ ଚାଲିଲେ ।

ଦିନ ପରେ ଦିନ, ମାସ ପରେ ମାସ ସମୁଦ୍ର ବକ୍ଷରେ କଟିଗଲା । କଲମ୍ବସ୍ଙ୍କ ନାବିକମାନେ ରୋଗରେ, ଖାଦ୍ୟ ଓ ପାନୀୟ ଅଭାବରେ ପୀଡ଼ିତ ହେବାକୁ ଲାଗିଲେ । ସମସ୍ତଙ୍କ ମନରେ ଆତଙ୍କ ଯେ, ଅଳ୍ପ କେତୋଟି ଦିନ ମଧ୍ୟରେ ଆତ୍ମୀୟସ୍ୱଜନଙ୍କଠାରୁ ବହୁ ଦୂରରେ ସାଗରର ବିଶାଳ ଜଳରାଶି ମଧ୍ୟରେ ସେମାନଙ୍କର ମୃତ୍ୟୁ ସୁନିଶ୍ଚିତ ।

ଯାହାହେଉ, ଶେଷରେ ସେମାନେ ସ୍ଥଳର ଦର୍ଶନ ପାଇଲେ । କଲମ୍ବସ୍ ମଧ୍ୟ ମନେ ମନେ ଆନନ୍ଦରେ ଅଧୀର ହୋଇ ଉଠୁଥାଆନ୍ତି । ଧୀରେ ଧୀରେ ଆସି ଜାହାଜ ଗୋଟିଏ ଦ୍ୱୀପର ଉପକୂଳରେ ଲାଗିଲା । ସ୍ଥଳଭାଗରେ ପାଦ ଦେଇ ପ୍ରଥମେ ଆଣ୍ଠୁମାଡ଼ି ବସି ଈଶ୍ୱରଙ୍କୁ ପ୍ରାର୍ଥନା କରିବା ପରେ ସେ ସେହି ସ୍ଥଳରେ ଦେଶଭକ୍ତିର ଚିହ୍ନସ୍ୱରୂପ ସ୍ପେନ୍‌ର ପତାକା ପ୍ରୋଥିତ କରିଥିଲେ । ଏହି ନୂତନ ଦେଶର ପ୍ରଖର ସୂର୍ଯ୍ୟକିରଣ, ତାଳ-ନଡ଼ିଆର ବଣ ଏବଂ ଅଧିବାସୀଙ୍କର ଲୋହିତ ବର୍ଣ୍ଣ ଦେଖି କଲମ୍ବସ୍ ଏହାକୁ ଭାରତବର୍ଷ ବୋଲି ଭାବିଥିଲେ । ଉପରେ ଚତୁଷ୍ପାର୍ଶ୍ୱବର୍ତ୍ତୀ ଦ୍ୱୀପ, ପର୍ବତ, ନଦୀ ଓ ସାଗର ଆବିଷ୍କାର କରି ତାହାର ମାନଚିତ୍ର ଅଙ୍କନ କଲେ ଏବଂ ଶେଷରେ ସେଠାରେ କେତେକ ନାବିକଙ୍କୁ ରଖି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ଫିରିବା ଆସିବା ଉଭୟ ପଥର ମାନଚିତ୍ର ମଧ୍ୟ ଅଙ୍କନ କରି ସେ ସଙ୍ଗରେ ଆଣିଥିଲେ ।

କାଳକ୍ରମେ ଜଣାଗଲା ଯେ, କଲମ୍ବସ୍ ଆବିଷ୍କାର କରିଥିବା ନୂତନ ସ୍ଥାନ ଏକ ପ୍ରକାଣ୍ଡ ମହାଦେଶ । ପରେ ଏହାର ନାମ

ଆମେରିକା ହେଲା । ମୃତ୍ୟୁ ପର୍ଯ୍ୟନ୍ତ କଲମ୍ବସ ଏକଥା ଜାଣି ନ ଥିଲେ । ତାଙ୍କର ଏକମାତ୍ର ଆଶ୍ୱାସନା ଥିଲା ଯେ ସେ ନିଜର କର୍ତ୍ତବ୍ୟ ଉତ୍ତମରୂପେ ପୂର୍ଣ୍ଣ କରି ପାରିଥିଲେ । ନିର୍ଦ୍ଧନ ହେଲେ ମଧ୍ୟ ନିଜର ସ୍ୱଦିଚ୍ଛା ବଳରେ ସମୁଦ୍ରରେ ଖେଳି ନାନା ବିପଦ ମଧ୍ୟରେ କଲମ୍ବସ୍ ଏହି ନୂତନ ଆବିଷ୍କାର କରିଥିଲେ । ତାଙ୍କର ନାମକରଣ ଅନୁସାରେ ଆମେରିକାର ପୂର୍ବପାର୍ଶ୍ୱର ଦ୍ୱୀପପୁଞ୍ଜ "ଓ୍ୱେଷ୍ଟଇଣ୍ଡିଜ୍" ବା ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜ ନାମରେ ଏ ପର୍ଯ୍ୟନ୍ତ ପରିଚିତ ହୋଇ ଆସୁଅଛି । (କଲମ୍ବସ୍ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କର ଆବିଷ୍କାରସ୍ପୃହା ମନୁଷ୍ୟ-ପ୍ରାଣରେ ଆଜି ମଧ୍ୟ ବିସ୍ମୟ ସୃଷ୍ଟି କରୁଅଛି ଓ ନୂତନ ଆବିଷ୍କାର ପାଇଁ କୌତୂହଳ ଜାଗ୍ରତ କରୁଅଛି ) ।

## ପ୍ରଶ୍ନ

୧ । କଲମ୍ବସ୍ କାହିଁକି ଆଜି ଆମ ନିକଟରେ ଅବିସ୍ମରଣୀୟ ?

୨ । କଲମ୍ବସ୍ଙ୍କ ଜଳଯାତ୍ରାର କାହାଣୀ ନିଜ ଭାଷାରେ ବର୍ଣ୍ଣନ କର ।

୩ । ସରଳାର୍ଥ ଲେଖ—

"କଲମ୍ବସ୍ ଆଜି ନାହାନ୍ତି ସତ,.....କୌତୂହଳ ଜାଗ୍ରତ କରୁଅଛି ।"

୪ । ବାକ୍ୟରେ ବ୍ୟବହାର କର ।

ଅନିଶ୍ଚିତ, ନିର୍ଦ୍ଧନ, ଆବିଷ୍କାର, ପ୍ରତ୍ୟାବର୍ତ୍ତନ, ଅବିସ୍ମରଣୀୟ ।

୫ । ଗୋଟିଏ ପଦରେ ପ୍ରକାଶ କର ।

ୟୁରୋପର ଅଧିବାସୀ, ଭାରତର ଅଧିବାସୀ, ସ୍ପେନର ଅଧିବାସୀ ।

୬ । ଉପଯୁକ୍ତ ବିଶେଷଣ ଦେଇ ଶୂନ୍ୟସ୍ଥାନ ପୂରଣ କର—

ନଜ—, —ଜଳରାଶି, ସୂର୍ଯ୍ୟକିରଣ—ପ୍ରଖର, ଅଧିବାସୀଙ୍କ ବର୍ଣ୍ଣ—, —ଅବସ୍ଥା ।

4

# ଉତ୍କଳ ସମ୍ମିଳନୀ

ଉତ୍କଳ ସମ୍ମିଳନୀର ପ୍ରାଣପ୍ରତିଷ୍ଠା ୧୯୦୩ ମସିହାରେ ହୋଇଥିଲା । ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନ ଦାସ ସର୍ବପ୍ରଥମେ ଓଡ଼ିଶାର ବିଚ୍ଛିନ୍ନ ଅଞ୍ଚଳକୁ ଏକତାବଦ୍ଧ କରିବା ପାଇଁ ଉତ୍କଳ ସମ୍ମିଳନୀ ସ୍ଥାପନ କରିଥିଲେ । ଉତ୍କଳୀୟ ଯୁବକମାନଙ୍କୁ ଏବଂ ଓଡ଼ିଆଭାଷୀ ଜନସାଧାରଣଙ୍କୁ ଓଡ଼ିଶାର ସ୍ୱାର୍ଥ ବିଷୟରେ ସଚେତନ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ସେତେବେଳେ ଓଡ଼ିଶାର ଓଡ଼ିଆଭାଷୀ ଅଞ୍ଚଳ ପୂର୍ବରେ ବଙ୍ଗ, ଉତ୍ତରରେ ବିହାର, ଉତ୍ତର-ପଶ୍ଚିମରେ ମଧ୍ୟପ୍ରଦେଶ ଏବଂ ଦକ୍ଷିଣରେ ମାନ୍ଦ୍ରାଜ ପ୍ରଦେଶ ସହିତ ଖଣ୍ଡବିଖଣ୍ଡ ହୋଇ ମିଶି ରହିଥିଲା । ଓଡ଼ିଶା ପ୍ରଦେଶର ଯେପରି ସ୍ୱତନ୍ତ୍ର ସତ୍ତା ନ ଥିଲା, ଓଡ଼ିଆ ଭାଷାର ଉନ୍ନତି ପାଇଁ ମଧ୍ୟ କୌଣସି ବଳିଷ୍ଠ ଉଦ୍ୟମ ଦେଖାଯାଉ ନ ଥିଲା । ଅନ୍ୟ ପ୍ରଦେଶମାନଙ୍କ ଅଧୀନରେ ଥିବାରୁ ଓଡ଼ିଶାର ଆଭ୍ୟନ୍ତରୀଣ ଉନ୍ନତି ଏବଂ ଭାଷାର ଅଭିବୃଦ୍ଧି ବିଷୟରେ ସମସ୍ତେ ଉଦାସୀନ ଥିଲେ । ଯେଉଁ ଓଡ଼ିଶାର ଭୌଗୋଳିକ ସୀମା ଦିନେ ଗଙ୍ଗାଠାରୁ ଗୋଦାବରୀ ଯାଏ ବିସ୍ତୃତ ଥିଲା ଓ ଓଡ଼ିଆପୁଅ ସାହସିକତା ପାଇଁ ପ୍ରସିଦ୍ଧ ଥିଲା, ସେହି ଓଡ଼ିଶା ଓ ଓଡ଼ିଆପୁଅର ବିକଳାଙ୍ଗ ଓ ଶ୍ରୀହୀନ ଅବସ୍ଥା ବିଂଶ ଶତାବ୍ଦୀର ଜାତିପ୍ରାଣ ନେତାମାନଙ୍କ ପ୍ରାଣରେ ଗଭୀର ଦୁଃଖ ସୃଷ୍ଟି କରିଥିଲା । ଯାହାହେଉ; ମଣିଷଜୀବନପାଇଁ ଯେପରି ଆଶା-ଆକାଂକ୍ଷା ଦୁଃଖ-ସୁଖ, ଅଶ୍ରୁ-ଆନନ୍ଦ, ଭଲ-ମନ୍ଦ ଧ୍ରୁବ ସତ୍ୟ, ଗୋଟାଏ ଜାତି ପାଇଁ ତାହା ମଧ୍ୟ ସେହିପରି ଚିରନ୍ତନ ସତ୍ୟ । ଓଡ଼ିଶାର ସାଧବପୁଅମାନେ ଜୀବନକୁ ବିପଦସଙ୍କୁଳ କରି ବାଣିଜ୍ୟ ଉଦ୍ଦେଶ୍ୟରେ

ବନେ ଦେଶାନ୍ତରକୁ ଯାଇ ସୁନା, ରୁପା, ଧନଦୌଲତ ବୋହି ଆଣୁଥିଲେ । ଓଡ଼ିଶାର ଅଧିବାସୀମାନେ ଅତୀତରେ ଉତ୍କଳୀୟ, କଳିଙ୍ଗବାସୀ ନାମରେ ପରିଚିତ ଥିଲେ । କଳିଙ୍ଗ ସେନାବାହିନୀ ନାମରେ ପଡ଼ୋଶୀ ପ୍ରଦେଶ ତଥା ଭାରତର ଅନ୍ୟ ପ୍ରଦେଶସମୂହ ଥରହର ହେଉଥିଲେ । ଖାରବେଳ, କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ, ମୁକୁନ୍ଦ ଦେବ ପ୍ରଭୃତି ରାଜନ୍ୟବୃନ୍ଦ ଓ ତାଙ୍କର ବଳିଷ୍ଠ ସୈନ୍ୟବାହିନୀଙ୍କ ଦିଗ୍‌ବିଜୟର ଇତିହାସ ହିଁ ଏହାର ଅମର ସାକ୍ଷୀ ।

ଭାରତର ସମସ୍ତ ପ୍ରଦେଶ ଇଂରେଜ ଶାସନାଧୀନ ହେବା ପରେ ସର୍ବଶେଷରେ ୧୮୦୩ ମସିହାରେ ଓଡ଼ିଶା ନିଜର ସ୍ୱାଧୀନତା ହରାଇଲା । ତା'ପରେ ପରେ ଇଂରେଜମାନେ ଶାସନର ସୁବିଧା ପାଇଁ ଉପରଲିଖିତମତେ ଭାଗ ଭାଗ କରି ଏହାକୁ ବିଚ୍ଛିନ୍ନ କରି ଦେଇଥିଲେ । ଶେଷରେ ମଧୁସୂଦନ, ଫକୀରମୋହନ, ରାଧାନାଥ, ଗୋପବନ୍ଧୁ, ବିଶ୍ୱନାଥ କର, ଗୌରୀଶଙ୍କର ରାୟ ପ୍ରଭୃତି ଦେଶପ୍ରେମୀ ନେତା ଓ କବି ଓଡ଼ିଶାର ଦଶାଚମାୟ ଅବସ୍ଥା ଉପଲବ୍‌ଧି କରି ପୂର୍ଣ୍ଣାଙ୍ଗ ଉତ୍କଳ ଗଠନ ପାଇଁ ନିଜର ଶକ୍ତିସାମର୍ଥ୍ୟ ଢାଳିଦେଲେ । ସେହି ଉତ୍ସାହର ବାର୍ତ୍ତାବହ, ସେହି ଉଦ୍ୟୋଗର ପ୍ରତୀକ ହେଉଛି ଆମର ଉତ୍କଳ ସମ୍ମିଳନୀ । ଏହାର କର୍ଣ୍ଣଧାର ଓ ଅଗ୍ରଣୀ ପରିଚାଳକ ପ୍ରଥମେ ଥିଲେ ଆମର ପରିଚିତ ପୂଜ୍ୟ କୁଳବୃଦ୍ଧ ମଧୁସୂଦନ ।

ଏଠାରେ ବରେଣ୍ୟ ମଧୁସୂଦନଙ୍କ ବିଷୟରେ ଦି'ପଦ କହିବା ସମୀଚୀନ ହେବ । କଟକ ଜିଲାର ସତ୍ୟଭାମାପୁର ଗ୍ରାମରେ ସେ ୧୮୪୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ଉକ୍ତ ଅଞ୍ଚଳ କଟକ- ଠାରୁ ନଅ ମାଇଲ ଏବଂ ବହୁଗ୍ରାମଠାରୁ ମାତ୍ର ଦୁଇ ମାଇଲ ଦୂରରେ

ଅତନ୍ଦ୍ରିତ ! ସେ ଥିଲେ ଯୋଗଜନ୍ମା ଏବଂ ମହାପୁରୁଷ ! ନିଜର ସମସ୍ତ ସ୍ୱାର୍ଥକୁ ବଳି ଦେଇ ସେ ଏବଂ ତାଙ୍କର ସମସାମୟିକ ଗୋପବନ୍ଧୁ ଦାସ ଦେଶର ମଙ୍ଗଳ ପାଇଁ ସବୁବେଳେ ବ୍ୟାକୁଳ ହେଉଥିଲେ । ସେ ଥିଲେ ନିର୍ଭୀକ, ସତ୍ୟାଗ୍ରହୀ ଏବଂ ସ୍ପଷ୍ଟବାଦୀ । ୧୯୩୪ ମସିହାରେ ତାଙ୍କର ତିରୋଧାନ ହେଲା । ୧୯୩୬ ମସିହାରେ ଓଡ଼ିଶା ପ୍ରଦେଶ ଅବଶ୍ୟ ସ୍ୱାତନ୍ତ୍ର୍ୟ ପାଇଲା; କିନ୍ତୁ ଏହି ଜନପ୍ରିୟ ନେତା ସ୍ୱତନ୍ତ୍ର ଓଡ଼ିଶା ମାଟିରେ ହସି ହସି ମରିବାର ସୁଯୋଗ ପାଇଲେ ନାହିଁ ।

[ କୁଳବୃଦ୍ଧ ମଧୁସୂଦନ ]

ଉତ୍କଳ ସମ୍ମିଳନୀ ଏବଂ ମଧୁସୂଦନ—ଏ ଦୁହିଁଙ୍କୁ କାହାଠାରୁ କାହାକୁ ବିଚ୍ଛିନ୍ନ କରି ହେବ ନାହିଁ । ଉତ୍କଳ ସମ୍ମିଳନୀର ସଭାମଣ୍ଡପରେ ବକ୍ତୃତା ଦେବା ସମୟରେ ସୁବକ୍ତା ମଧୁବାବୁ ଥରେ ନିଜ ପ୍ରାଣର କଥା ଗାଇଥିଲେ—

"ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇ ଦେ' ଯାଇ
ଡେଇଁପଡ଼ ସିନ୍ଧୁ ମଝରେ ।"

ଉତ୍କଳ ସମ୍ମିଳନୀର ଆବଶ୍ୟକତା, କାର୍ଯ୍ୟକଳାପ ଓ ଉଦ୍ଦେଶ୍ୟ ଏହି ପଦଟିରୁ ସ୍ପଷ୍ଟ ହୁଏ । ସତ୍ୟର ପ୍ରତିଷ୍ଠା ପାଇଁ, ନ୍ୟାୟର ବିଚାର ପାଇଁ, ଦାବୀର ହାସଲ ପାଇଁ ଏହି ସମ୍ମିଳନୀ ପ୍ରଥମେ ଅଭିପ୍ରେତ ହୋଇଥିଲା । ଓଡ଼ିଶା ବାହାରେ ରହୁଥିବା ଓଡ଼ିଆ ଶ୍ରମିକ-ଗୋଷ୍ଠିର ଲୋକମାନଙ୍କ ନିର୍ଯ୍ୟାତନା ବାଦବିସମ୍ବାଦକୁ ନିର୍ଣ୍ଣୟ କରିବାର ମଧ୍ୟ ଏହି ସମ୍ମିଳନୀ କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ଆଣୁଥିଲା । ତାର ପ୍ରତିକାରର ବ୍ୟବସ୍ଥା ବି ହେଉଥିଲା । ବିହାର ଏବଂ ଓଡ଼ିଶା ପାଇଁ ସେତେବେଳେ ମିଳିତ ସଦସ୍ୟ ସଭା ଗଠିତ ହୋଇଥିଲା । ଓଡ଼ିଶାର ବିପନ୍ନ ଗୃହୀ-ମାନଙ୍କ ଅବସ୍ଥା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଆବଶ୍ୟକତା, ବନ୍ୟାବିଧ୍ୱସ୍ତ ଆଦି ବହୁ ସମସ୍ୟାର କରୁଣ ଚିତ୍ର ଏହି ଉତ୍କଳ ସମ୍ମିଳନୀ ଓଡ଼ିଶାର କର୍ତ୍ତୃପକ୍ଷଙ୍କଠାରେ ଉପସ୍ଥାପିତ କରାନ୍ତୁ । ଫଳରେ ଏହାର କାର୍ଯ୍ୟ ସୀମିତ ନ ହୋଇ ବହୁମୁଖୀ ହୋଇଥିଲା ।

ଦେଶପ୍ରାଣ ମଧୁସୂଦନଙ୍କ ଆହ୍ୱାନକ୍ରମେ ବହୁ ସଂଖ୍ୟକ ଯୁବକ ଉତ୍କଳ ସମ୍ମିଳନୀର ସଭ୍ୟ-ତାଲିକାଭୁକ୍ତ ହୋଇ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ସମସ୍ତଙ୍କ ଆଖି ଆଗରେ ଜାତିସେବାର ମଶାଲ, ଦେଶମିଶ୍ରଣର ମହନୀୟ ଆଦର୍ଶ ଏବଂ ଭ୍ରାତୃପ୍ରେମର ଉଦ୍‌ବେଳ ନିଷ୍ଠା ସତତ ପ୍ରତିଭାତ ହୋଇଉଠୁଥିଲା । ନଦୀମାତୃକ ଦେଶ ଓଡ଼ିଶାର ବନ୍ୟାବିଧ୍ୱସ୍ତ ସମୟରେ ଉତ୍କଳ ସମ୍ମିଳନୀର ସେବା ଓ ତ୍ୟାଗ ପ୍ରଶଂସନୀୟ । ଅଭ୍ୟନ୍ତରୀଣ ସଂଗଠନ ଏବଂ ଏକତା ଏହାର ଅନ୍ୟତମ ଲକ୍ଷ୍ୟ ଥିଲା ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ଉତ୍କଳ ସମ୍ମିଳନୀ ବର୍ଷରେ ଏକାଧିକ ଥର ବସୁଥିଲା । ଏଥିରେ ଏହାର ଉଦ୍ୟୋକ୍ତାମାନେ ଓଜସ୍ୱିନୀ ଭାଷାରେ ସମବେତ ଜନତାକୁ ଭାଷଣ ଦେଉଥିଲେ ଏବଂ ପ୍ରଦେଶର ସମସ୍ୟା ବିଷୟରେ ସଚେତନ କରାଉଥିଲେ ।

ଏହି ସମ୍ମିଳନୀର ସକ୍ରିୟ ଚେଷ୍ଟାରେ ୧୯୩୬ ମସିହା ଏପ୍ରିଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଘୋଷିତ ହେଲା । ଓଡ଼ିଶା ସ୍ୱାଧୀନ ହେଲା ସତ, ତଥାପି ଓଡ଼ିଶାର କେତେକ ଅଞ୍ଚଳ ଏବେ ବି ନିଜ ପ୍ରଦେଶରୁ ବିଚ୍ଛିନ୍ନ ହୋଇ ରହିଅଛି । ବସ୍ତର, ଫୁଲଝର, ଚନ୍ଦ୍ରପୁର ଆଦି ଅଞ୍ଚଳ ମଧ୍ୟପ୍ରଦେଶରେ, ଷଢ଼େଇକଳା, ଖରସୁଆଁ, ସିଂହଭୂମିର କେତେକ ଅଞ୍ଚଳ ବିହାର ପ୍ରଦେଶରେ, ମେଦିନୀପୁର ଜିଲ୍ଲାର କେତେକ ଓଡ଼ିଆଭାଷୀ ଅଞ୍ଚଳ ପଶ୍ଚିମବଙ୍ଗରେ ଏବେ ବି ରହିଅଛି । ଉତ୍କଳ ସମ୍ମିଳନୀ ଆଜି ସୁପ୍ତ ସତ, ତଥାପି ଆଶା କରାଯାଏ ପୁଣି ଥରେ ଏହା ଚେଇଁଉଠି ସୁଯୋଗ କର୍ମୀମାନଙ୍କର ପରିଚାଳନାରେ ନିଜର ଅପୂର୍ଣ୍ଣ କାମ ହାସଲ କରିବାକୁ ଆପ୍ରାଣ ଉଦ୍ୟମ କରିବ । ସେ ଦାୟିତ୍ୱ ଏ ରାଜ୍ୟର ସମସ୍ତ ନାଗରିକଙ୍କର—ସେଇମାନେ ହିଁ ଗଢ଼ିବେ ପୂର୍ଣ୍ଣାଙ୍ଗ ଉତ୍କଳ, ସେଇମାନେ ହିଁ ଫେରାଇ ଆଣିବେ ଲୁପ୍ତସର୍ବସ୍ୱ ଓଡ଼ିଶାର ଗତ ଗୌରବ ।

## ପ୍ରଶ୍ନ

୧ । ଉତ୍କଳଗୌରବ ମଧୁସୂଦନ ପୂର୍ଣ୍ଣାଙ୍ଗ ଉତ୍କଳର ପ୍ରତିଷ୍ଠା ପାଇଁ କଅଣ କରିଥିଲେ ବର୍ଣ୍ଣନା କର ।

୨ । ଉତ୍କଳ ସମ୍ମିଳନୀର ଇତିହାସ ବିଷୟରେ ଏହି ପ୍ରବନ୍ଧରୁ ତୁମେ କଅଣ ଶିକ୍ଷା ଲାଭ କଲ ଲେଖ ।

୩ । ସରଳାର୍ଥ ଲେଖ—

(କ) ସେହି ଉତ୍ସାହର ବାର୍ତ୍ତାବହ, ସେହି ଉଦ୍ୟୋଗର ପ୍ରତୀକ ହେଉଛି ଆମର ଉତ୍କଳ ସମ୍ମିଳନୀ ।

(ଖ) ସେ ଦାୟିତ୍ୱ ଏ ରାଜ୍ୟର ସମସ୍ତ ନାଗରିକଙ୍କର—ସେଇମାନେ ହିଁ ଗଢ଼ିବେ ପୂର୍ଣ୍ଣାଙ୍ଗ ଉତ୍କଳ ।

୪ । ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର—
ବାର୍ତ୍ତାବହ, କର୍ଣ୍ଣଧାର, ଅଗ୍ରଣୀ, ହୃତସର୍ବସ୍ୱ, ଅପୂର୍ଣ୍ଣକାମ, ନଦୀମାତୃକ, ଉଦ୍ୟୋକ୍ତା ।

---

# ସ୍ୱାସ୍ଥ୍ୟନିବାସ ଉତ୍‌କାମଣ୍ଡ

ଭ୍ରମଣ-ପ୍ରବୃତ୍ତି ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି । ଭ୍ରମଣଦ୍ୱାରା ମନୁଷ୍ୟ ଆପଣାକୁ ପ୍ରକାଶ କରିବାର ଓ ଅପରକୁ ଜାଣିବାର ସୁଯୋଗ ଲାଭ କରେ । କେବଳ ଆନନ୍ଦ ଲାଭ ଭ୍ରମଣର ଏକମାତ୍ର ଲକ୍ଷ୍ୟ ନୁହେଁ । ଭ୍ରମଣଲବ୍ଧ ଅନୁଭୂତି ଓ ଅଭିଜ୍ଞତାଦ୍ୱାରା ମନୁଷ୍ୟର ଜ୍ଞାନ-ରାଜ୍ୟର ପରିସର ବିସ୍ତୃତ ହୁଏ, ତାର ରୁଚି ଓ ଦୃଷ୍ଟିକୋଣ ପରିବର୍ତ୍ତିତ ହୁଏ ।

ସେଥର ଆମ୍ଭେମାନେ ଭାରତର ଦକ୍ଷିଣାଞ୍ଚଳ ଭ୍ରମଣରେ ବାହାରିଥାଉଁ । ମାନ୍ଦ୍ରାଜରେ ପହଞ୍ଚିବା ପରେ କୌତୂହଳ ହେଲା ଉତ୍‌କାମଣ୍ଡ ଯିବା ପାଇଁ । ଆବଶ୍ୟକ ବ୍ୟବସ୍ଥା କରିସାରି ଅପେକ୍ଷା କରିଥାଉଁ ।

ସନ୍ଧ୍ୟାବେଳେ ମାନ୍ଦ୍ରାଜ ଷ୍ଟେସନରୁ ବାହାରିଲା 'ବ୍ଲୁ ମାଉଣ୍ଟେନ୍' ଏକ୍‌ସପ୍ରେସ୍ । ଇଂରେଜୀ କଥାଟାକୁ ଓଡ଼ିଆରେ କହିଲେ ହେବ ନୀଳଗିରି ଏକ୍‌ସପ୍ରେସ୍ । ରାତିସାରା ଏହି ଗାଡ଼ିଟାରେ କଟାଇଲୁ । ସକାଳ ହେଲାବେଳକୁ ପହଞ୍ଚିଲୁ ମେଟ୍‌ପଲାୟାମ୍ ଷ୍ଟେସନରେ । ଏହିଠାରେ ଗାଡ଼ି ବଦଳ କରି ଉତ୍‌କାମଣ୍ଡ ଯିବାକୁ ହୁଏ ।

ଜୀବନରେ ପ୍ରଥମ ଥରପାଇଁ ହିଲ୍ ରେଲ୍‌ଓ୍ୱେ ବା ପର୍ବତ-ଚଢ଼ାଳୀ ରେଳଗାଡ଼ି ଦେଖାହେଲା । ବଡ଼ କଉତୁକିଆ ସେ ଗାଡ଼ିସବୁ ।

ଡବାଗୁଡ଼ିକ ଲମ୍ବା ଲମ୍ବା, କିନ୍ତୁ ଚଉଡ଼ାରେ ଆମର ସଚରାଚର ରେଳଗାଡ଼ିର ପ୍ରାୟ ଅଧେ ହେବ। ଦୁଇଟି ଧାଡ଼ି ବେଞ୍ଚ ମୁହାଁମୁହିଁ ପଡ଼ିଛି। ମଝିରେ ବ୍ୟବଧାନ ପ୍ରାୟ ଗଜେ। ମୋଟ ଉପରେ ମନେ ହେଲା ଯେପରି ବଡ଼ ଗାଡ଼ିଗୁଡ଼ିକର ଏଗୁଡ଼ିକ କୁନି ଭାଇ। ଗୋଡ଼ ପରି ରହିଥିବା ଚକଗୁଡ଼ିକ ବି ଛୋଟ ଛୋଟ। ସେହି ଛୋଟ ପାଦ ପକାଇ ସେ ତ ଆଉ ଚଉଡ଼ା ରାସ୍ତାରେ ଚାଲିପାରିବ ନାହିଁ। ତେଣୁ ଲୁହା ରେଲ୍ ପଡ଼ିଥିବା ରାସ୍ତାର ଓସାର ମଧ୍ୟ କମ୍। ପୁଣି ଉପରକୁ ଉଠିବାବେଳେ କାଳେ କେତେବେଳେ ଖସିପଡ଼ିବ, ଏହି ଭୟରେ ଉଭୟ ରେଲ୍ ରେଖାର ମଝିରେ ଧାଡ଼ିଏ ଲୁହା ଥାଏ। ତହିଁରେ ସାଇକେଲର ଚେନ୍ ଚକର ଦାନ୍ତ ଯେପରି ଚେନ୍‌ର କଣାମାନଙ୍କରେ ଗଳିଥାଏ, ସେହିପରି ହୋଇଥାଏ। ଦିଶୁଥାଏ ବଡ଼ କଉତୁକିଆ। କିନ୍ତୁ ସବୁଠାରୁ ଆହୁରି ଗୋଟିଏ ଅତି ଦରକାରୀ ବିଷୟ ଏହି ଯେ ଏହି ଗାଡ଼ିଗୁଡ଼ିକ ହାଲୁକା। କାରଣ ତାକୁ ଟାଣି ପର୍ବତ ଉପରକୁ ଉଠାଇବାକୁ ପଡ଼େ।

ନୀଳଗିରି ପାହାଡ଼। ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତମାଳା ଏହିଠାରେ ମିଶିଛି। ପାହାଡ଼ଟିର ଉଚ୍ଚତା ପ୍ରାୟ ୯୨୦୦ ଫୁଟ, ଅର୍ଥାତ୍ ଦେଢ଼ ମାଇଲରୁ କିଛି ବେଶୀ। କିନ୍ତୁ ମେଟୁପଲାୟାମ୍‌ରୁ ପାହାଡ଼ ଉପରେ ଥିବା ଉଟକାମଣ୍ଡ ଷ୍ଟେସନ ପର୍ଯ୍ୟନ୍ତ ରେଳପଥର ଦୀର୍ଘତା ୨୯ ମାଇଲ। ସେହି ଦୂରତା ମଧ୍ୟରେ ୧୧।୧୨ଟି ଷ୍ଟେସନ। ଦେଢ଼ ମାଇଲ ଉଚ୍ଚ ପାହାଡ଼ର ମୁଣ୍ଡ ଉପରକୁ ଉଠିବା ପାଇଁ ରେଳଗାଡ଼ିକୁ ପର୍ବତ ଚାରିପାଖେ ଏଙ୍କିଆ ବାଙ୍କିଆ ପଥ ବୁଲି ବୁଲି ଉଠିବାକୁ ପଡ଼େ। ତେଣୁ ରେଳପଥର ଦୈର୍ଘ୍ୟ ବେଶୀ।

ମେଠ୍‌ପାଲ୍‌ଯାମ୍‌ରୁ ଗାଡ଼ି ଛାଡ଼ିଲା ହୁଇସିଲ୍ ଦେଇ । ଷ୍ଟେସନ
ଘରସବୁ ପାରହେବା ପରେ ଦୁଇ ପାଖର ବନର ଦୃଶ୍ୟ ଆଖିରେ
ପଡ଼େ । ଟିକିଏ ସମତଳ ସ୍ଥାନରେ, ଯେତେଦୂର ପର୍ଯ୍ୟନ୍ତ ଆଖି ଯାଏ,
ଦେଖିବାକୁ ମିଳେ ତାଳ, ନଡ଼ିଆ ଆଉ ଗୁଆଗଛର ଜଙ୍ଗଲ ।
ଗୁଆଗଛଗୁଡ଼ିକ ସେ ମଧ୍ୟରେ ଅତି ସୁନ୍ଦର । ସିଧାସଳଖ ଉପରକୁ
ଚାଲି ଯାଇଥାଏ, ଖଣ୍ଡେ ଖଣ୍ଡେ ମୋଟା ବାଉଁଶ ପରି । ସତେ ଯେପରି
ଉପରେ ଗୋଟିଏ ସବୁଜ ଚାନ୍ଦୁଆ ଟାଣିଦେବା ଲାଗି କେତେଗୁଡ଼ାଏ
ବାଉଁଶ କିଏ ପୋତିଦେଇ ଯାଇଛି । ବୁଢ଼ା, ପାଚିଲା, ଶୁଖିଲା ପତ୍ର
ଦେଖିବାକୁ ସ୍ୱଳ୍ପ । ସବୁ ଯେପରି ଗୋଟିଏ ସବୁଜର ରାଜ୍ୟ । ତଳେ
ଘନ ଛାୟା । ସୂର୍ଯ୍ୟକିରଣ ଯେଉଁଠାରେ ପଡ଼ିଥାଏ, ସେଠାରେ ତାହା
ସ୍ପଷ୍ଟ ବାରି ହୋଇଥାଏ ଛାୟାର ଅନ୍ଧକାର ମଧ୍ୟରେ । ହଠାତ୍
ଗାଡ଼ି ହୁଇସିଲ୍ ଦେଲା ଏବଂ ସଙ୍ଗେ ସଙ୍ଗେ ଲାଇଟଗୁଡ଼ିକ ଜଳିଉଠିଲା ।
ଦିନ ନଅଟା ସମୟରେ ଲାଇଟ ଆଲୁଅସବୁ ଜଳି ଉଠିବାର କାରଣ
ବୁଝିବାକୁ ଅକ୍ଷମ ହୋଇ ଇତସ୍ତତଃ ଚାହୁଁ ଚାହୁଁ ଘୋର ଅନ୍ଧକାର
ମାଡ଼ି ଆସିଲା । ଜଣାଗଲା ଏ ଗୋଟିଏ ସୁଡ଼ଙ୍ଗ । ସମୁଦାୟ ପଥ
ମଧ୍ୟରେ ଏହିପରି ୨୦।୨୨ଟି ସୁଡ଼ଙ୍ଗ ପଡ଼େ । ପର୍ବତ ମଝିରେ
କଣା କରି ରେଳରାସ୍ତା ତିଆରି କରାହୋଇଛି । ସ୍ଥାନେ ସ୍ଥାନେ
ପର୍ବତ କଟାହୋଇଛି ସମାନ ସମାନ କାନ୍ଥ ପରି ଦୁଇ ପାଖରେ ।
ସେହି କାନ୍ଥ ଉପରୁ ଲମ୍ବି ଆସିଥିବା ନାନାଜାତିର ପାଷାଣଭେଦୀ
ଲତା କେତେ ରଙ୍ଗର ଫୁଲରେ ମଣ୍ଡିତ ହୋଇ ଗାଡ଼ିରେ ଘଷିହୋଇ
ଯାଉଥାନ୍ତି । ହାତ ବଢ଼ାଇ ଲତାଟିଏ ଧରିନେବାକୁ ଇଚ୍ଛା ହେଲା;
କିନ୍ତୁ ତାକୁ ଛୁଇଁ ଛୁଇଁ ଗାଡ଼ି ଆମକୁ ଟାଣି ନେଇଗଲା । ସ୍ଥାନେ
ସ୍ଥାନେ ସେହିପରି ପର୍ବତ କାନ୍ଥ ଉପରୁ ଝରୁଛି ଝରଣା । ନିର୍ମଳ

ଧଳା ଚାଣି ସୂର୍ଯ୍ୟକରଣରେ ଚକ୍ ଚକ୍ କରୁଥାଏ । ଅପୂର୍ବ ଦୃଶ୍ୟ ସେ !

ଗାଡ଼ି ଯେତେବେଳେ ପାହାଡ଼କୁ ଘୂରୁଥାଏ, ଉପରୁ ଦେଖାଯାଏ ତଳର ରେଳଲାଇନ୍ ଆଉ ଷ୍ଟେସନ । ତା' ପରେ ଅନ୍ତର ଦିଶେ ମଝିରେ ସଡ଼କ—ଥାକ ଥାକ ହୋଇ ପାହାଚ ପଡ଼ିଲା ପରି ରହିଛି । ମନେ ହୁଏନା ଯେ ସେସବୁ ଗୋଟିଏ ସଡ଼କ ବା ରାସ୍ତାର ଅଂଶବିଶେଷ ।

ଷ୍ଟେସନ୍‌ମାନଙ୍କ ମଧ୍ୟରେ କୁନୁର ପ୍ରଧାନ । ଏହା ଏକ ସ୍ୱାସ୍ଥ୍ୟକର ସ୍ଥାନ ଓ ତାର ନିକଟବର୍ତ୍ତୀ ଅଞ୍ଚଳ ବଡ଼ ମନୋହର । ପର୍ବତର ଗଛ, ଲତା, ଫୁଲ, ଫଳ ଛାଡ଼ିଦେଲେ ମଧ୍ୟ ଏ ସ୍ଥାନରେ ଘରଗୁଡ଼ିକର ଗଠନ, ସାଜସଜ୍ଜା ଏବଂ ଉପବନ ଦେଖିଲେ ମନରେ ଅପୂର୍ବ ଆନନ୍ଦ ଜାତ ହୁଏ । ଶେଷରେ ଦିନ ପ୍ରାୟ ବାରଟା ବେଳକୁ ପହଞ୍ଚିଲୁ ଉଟକାମଣ୍ଡ ଷ୍ଟେସନରେ । ଉଟକାମଣ୍ଡ ବା ଉଟୀ ନୀଳଗିରିର ଲଲାଟରେ ଟୀକା ପରି । ଭାରତର ସ୍ୱାସ୍ଥ୍ୟନିବାସ ଓ ଗ୍ରୀଷ୍ମନିବାସମାନଙ୍କ ମଧ୍ୟରେ ସୌନ୍ଦର୍ଯ୍ୟ ପାଇଁ ଏହା ବିଖ୍ୟାତ । ଦୀର୍ଘ ତିନି ଦିନର ଯାତ୍ରା ଓ କ୍ଳାନ୍ତି ଶେଷରେ ଆମ୍ଭେମାନେ ଉଟୀରେ ପହଞ୍ଚି ଗୋଟିଏ ହୋଟେଲରେ ଆଶ୍ରୟ ନେଲୁଁ । ସେତେବେଳେ ମଇମାସର ମଧ୍ୟାହ୍ନ; କିନ୍ତୁ ଉଟୀରେ ମନେହେଲା ସତେ ଯେପରି ଡିସେମ୍ବର ମାସର ସକାଳ ଆଠଟା ବାଜୁଛି । ହଁ, ଉଟୀରେ ସେହିପରି ଥଣ୍ଡା ହୁଏ । ଦିନବେଳେ ଗରମ କୋଟ, ମୋଜା, ମଫଲର; ରାତିରେ ଦୁଆର ଝରକା ବନ୍ଦକରି କମ୍ବଳ ଘୋଡ଼େଇ ହୋଇ ଶୋଇବାକୁ ପଡ଼େ ।

ଫାଲ୍‌ଗୁନ, ଏପ୍ରିଲ, ମଇ, ଜୁନ୍ ଓ ଜୁଲାଇ—ଏହି ଗୁଡ଼ିକ ମାସ ହିଁ ଉଟୀର ସୌଭାଗ୍ୟ ସମୟ । ଭାରତର ବିଭିନ୍ନ

ଅଞ୍ଚଳରୁ ଆସି ରାଜା, ମହାରାଜା ଓ ଅନ୍ୟାନ୍ୟ ଧନୀ ଲୋକେ ଯେତେବେଳେ ଏଠାରେ ପହଞ୍ଚନ୍ତି । ଏହା ମାଦ୍ରାଜ ସରକାରଙ୍କ ଗ୍ରୀଷ୍ମନିବାସ ହୋଇଥିବାରୁ ସରକାରୀ ଅଫିସସବୁ ମଧ୍ୟ ଏହିଠାରେ ହୋଇଥାଏ; ତେଣୁ ଅଫିସର, ଅମଲା ଏବଂ ଅନ୍ୟାନ୍ୟ ଶ୍ରେଣୀର ଲୋକମାନଙ୍କର ସମାଗମ ହୁଏ ।



[ ଉଟକାମଣ୍ଡର ଏକ ଦୃଶ୍ୟ ]

ଛୋଟ ଛୋଟ ପାହାଡ଼ ମଝିରେ ଗୋଟିଏ ଉପତ୍ୟକା । ଏହି ଉପତ୍ୟକାରେ ଦୋକାନ, ବଜାର, ଥିଏଟର, ସିନେମାଘର, ପାହାଡ଼ମାନଙ୍କରେ ଅଫିସ, ଡ଼ାକ୍ତରଖାନା, ଲୋକବସତି । ବଡ଼ ଧନୀଲୋକଙ୍କ କୋଠିସବୁ ଅତି ବିସ୍ତୃତ । ସେ କୋଠି ହତା ଭିତରେ ଦୁଇ ତିନ ଥାକ ହୋଇ ଘରସବୁ ଥାଏ । ଇଉକାଲିପଟସ୍ ଗଛର

ବଣ ଗୁଳ୍ମଆଡ଼େ; ଆଉ କେତେ ଅସଂଖ୍ୟ ନାମହୀନ ଗଛ—ଘେରିଛି ବାଡ଼ । କେତେ ଫୁଲ କଳନା କରିହୁଏ ନାହିଁ । ମନେହୁଏ ଯେପରି ଫୁଲରେ ଗ୍ରୁଇ ହୋଇପଡ଼ୁଛି ମାଳଗିରି ।

ମାଳଗିରିର ଆଗନ୍ତୁକ ଧନୀ ଅଧିବାସୀମାନେ ବିଳାସରେ ଜୀବନ କଟାଇବାକୁ ଆସିଥାନ୍ତି । ତେଣୁ ସେମାନଙ୍କ ପୋଷାକ-ପତ୍ରର ବିଚିତ୍ର ବର୍ଣ୍ଣ ଆଉ ମୋଟରଗାଡ଼ିର ନୂଆ ଆକୃତି ସାଧାରଣତଃ ଆଖିରେ ପଡ଼େ । ଯେଉଁଦିନ ଘୋଡ଼ାଦୌଡ଼ ହୁଏ, ସେଦିନ ପ୍ରାୟ ସବୁ ଧନୀ ଲୋକେ ରେସ୍‌କୋର୍ସ ବା ଦୌଡ଼ପଡ଼ିଆରେ ଜମା ହୋଇଥାନ୍ତି । ଶହ ଶହ, ହଜାର ହଜାର ଟଙ୍କାର ବାଜି ଲଗାଇ ଜିଣିବାର ଉତ୍ତେଜନା ନେଇ ସେମାନେ ଆସନ୍ତି; କିନ୍ତୁ ସେମାନଙ୍କ ବେଶ, ପୋଷାକ, ଜୋତା, ସ୍ୱାସ୍ଥ୍ୟ, ଆନନ୍ଦ, ଫୂର୍ତ୍ତି, ମଟର ପ୍ରଭୃତିର ନାନାବିଧ ବର୍ଣ୍ଣ, ଆକାର ପ୍ରକାର ଓ ଚଢ଼ଣ ଦୃଷ୍ଟିରୁ ଗୋଟାଏ ସ୍ୱାଭାବିକ ପ୍ରଦର୍ଶନୀ ଖୋଲିଯାଏ । ଦେଖଣାହାରିର ମନ ପରିତୃପ୍ତ ହୁଏ ।

କିନ୍ତୁ ସ୍ଥାୟୀ ଅଧିବାସୀମାନେ ବଡ଼ ନିରଳସ ଓ ପରିଶ୍ରମୀ । ଦେଖିବାକୁ କଳା; କିନ୍ତୁ ସୁସ୍ଥ ଆଉ ମଜଭୁତ । ଜଙ୍ଗଲ ସଫାକରି ଏମାନେ ଚାଷ କରନ୍ତି ପାହାଡ଼ ଉପରେ । ଦୁଇ ତିନ ହାତ ତଳକୁ ଗୋଟାଏ ଗୋଟାଏ ପାହାଚ କରି ପାହାଡ଼କୁ କାଟିଦିଅନ୍ତି ଓ ମୁଣ୍ଡା କାଠ ସାହାଯ୍ୟରେ ପିଟି ପିଟି ମାଟିକୁ ଗୁଣ୍ଡ କରି ଧୂଳି କରିଦିଅନ୍ତି । ସେହି ଜମିରେ ହୁଏ ଆଳୁ, କୋବି, ମଟର, ବିଲାତି-ବାଇଗଣ, ଲଙ୍କା ପ୍ରଭୃତି ଯାବତୀୟ ଶୀତ ଦିନିଆ ଫସଲ । ବର୍ଷା ପ୍ରାୟ ଅଧିକାଂଶ ସମୟରେ ହୁଏ । ପାଣି ଉପର ପାହାଚରୁ କ୍ରମେ କ୍ରମେ ତଳକୁ ତଳକୁ ଆସେ । ଏହି ପ୍ରଣାଳୀରେ ଜଳସେଚନ କାମ ହୁଏ ।

ଦିନେ ଯାଉଁ ଯାଉଁ ଜଣେ କୃଷକଙ୍କୁ ସୁଖ ଦୁଃଖ ପଚାରିବାକୁ ଇଚ୍ଛା ହେଲା; କିନ୍ତୁ ତା ସହିତ କୌଣସି ଭାବର ଆଦାନ-ପ୍ରଦାନ ସମ୍ଭବ ହେଲା ନାହିଁ । କାରଣ ସେ ତାମିଲ ଛଡ଼ା ଅନ୍ୟ କୌଣସି ଭାଷା ଜାଣେ ନାହିଁ ବା ବୁଝେ ନାହିଁ । ବିଭିନ୍ନ ପ୍ରକାରର ଭାଷା ଜାଣିଥିଲେ ବିଭିନ୍ନ ଦେଶର ଲୋକଙ୍କ ସହିତ ପରିଚିତ ହୋଇ ତାଙ୍କ ମନକଥା ଜାଣିବା ସହଜ ।

ଆସିବା ଦିନ ସକାଳୁ ହେଲା ବର୍ଷା । ହୋଟେଲ ଘରର ଝରକା ଦେଇ ମେଞ୍ଚାଏ ମେଞ୍ଚାଏ ଧୂଆଁଳିଆ ମେଘ ପଶିଆସିଲା ଘରକୁ । ଝରକା ବନ୍ଦ କରୁ କରୁ ମୁହଁସାକ ବୋଳି ହୋଇଗଲା ପାଣି । ବର୍ଷା ଛାଡ଼ିଲା ପରେ ଗାଧୋଇବାକୁ ଗଲାବେଳେ ଗୁଳକାଆଣି କାଗଜରେ ଥୋଇଦେଇଗଲା ନଡ଼ିଆତେଲ । ହଁ, ଏହି ମଇ ମାସରେ ମଧ୍ୟ ଏଠାରେ ନଡ଼ିଆତେଲ ଜମି ହୁଏ କାଗଜରେ ଜୁଗରେ କଣ୍ଡା ହୋଇ । ଏଥିରୁ ଏ ସ୍ଥାନର ଶୀତର ମାତ୍ରା ଜଣାପଡ଼ିବ । ଗରମ ପାଣିରେ ଗାଧୋଇ, ଖିଆପିଆ କରି ପ୍ରାୟ ୧୨ଟା ବେଳକୁ ଆମେ ପ୍ରସ୍ତୁତ ହୋଇଗଲୁଁ ଫେରିବାକୁ ।

## ପ୍ରଶ୍ନ

୧ । ପାର୍ବତ୍ୟ ରେଳଗାଡ଼ିର ଡବାସବୁକୁ ଛୋଟ ଏବଂ ହାଲୁକା କରାଯାଏ କାହିଁକି ?

୨ । ମେଟୁପାଲାୟାମ୍‌ରୁ ଉଟୀ ପର୍ଯ୍ୟନ୍ତ ରେଳଯାତ୍ରା ବର୍ଣ୍ଣନ କର ।

୩ । ଭ୍ରମଣଦ୍ୱାରା ମନୁଷ୍ୟର ଜ୍ଞାନର ପରିସର କପରି ବିସ୍ତୃତ ହୁଏ ବୁଝାଇଦିଅ ।

୪ । ସରଳାର୍ଥ ଲେଖ—

ଭ୍ରମଣଦ୍ୱାରା ମନୁଷ୍ୟ ଆପଣାକୁ ପ୍ରକାଶ···ସୁଯୋଗ ଲାଭ କରେ ।

୫ । ଧୂଆଁଳିଆ, ପରିତୃପ୍ତ, ଜଳସେଚନ, ନଳକଣ୍ଠବର୍ତ୍ତୀ, ଗବେଷଣା, ଆଗନ୍ତୁକ—ଏହି ଶବ୍ଦଗୁଡ଼ିକ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

୬ । ରେଖାଙ୍କିତ ସ୍ଥାନମାନଙ୍କରେ ଉପଯୁକ୍ତ ବିଶେଷ୍ୟ ପଦ ବସାଇ ବାକ୍ୟରେ ବ୍ୟବହାର କର—

ନିରଳସ—, ଧୂଆଁଳିଆ—, ଶୀତଦ୍ଧନିଆ—, ନଳକଣ୍ଠବର୍ତ୍ତୀ—, ବସ୍ତୁତ— ।

---

# ଭାରତର ସଙ୍ଗୀତ ଓ ନୃତ୍ୟକଳା

ସଙ୍ଗୀତ କହିଲେ ଆମ୍ଭେମାନେ ସାଧାରଣତଃ କେବଳ ଗୀତ ବୋଲି ବୁଝୁ, କିନ୍ତୁ ବାସ୍ତବରେ ଗୀତ, ବାଦ୍ୟ ଏବଂ ନୃତ୍ୟର ଏକତ୍ର ସମାବେଶକୁ ଶାସ୍ତ୍ରରେ 'ସଙ୍ଗୀତ' ବୋଲି କୁହାଯାଏ । ଏ ତିନି ବିଭାଗ ମଧ୍ୟରେ ଗୀତର ପ୍ରାଧାନ୍ୟ ହେତୁ ତାହାର ଏପରି ନାମକରଣ କରାଯାଇଛି ।

## ଗୀତ

ନାଦ ବା ଶବ୍ଦରୁ ଗୀତର ଉତ୍ପତ୍ତି ଘଟିଅଛି । ଜଳ ଆଲୋଡ଼ିତ ହେଲେ ତହିଁରୁ ତରଙ୍ଗ ସୃଷ୍ଟି ହୁଏ । ଏହି ତରଙ୍ଗରୁ ଶବ୍ଦ ଜନ୍ମେ । ସେହିପରି ବାୟୁମଣ୍ଡଳ ପ୍ରକମ୍ପିତ ହେଲେ ନାଦ ସୃଷ୍ଟି ହୁଏ । ବାୟୁ ଅଦୃଶ୍ୟ; ତେଣୁ ବାୟୁର କମ୍ପନ ଆମ୍ଭମାନଙ୍କର ଦୃଷ୍ଟି ଗୋଚର

ହୁଏ ନାହିଁ । ଝଡ଼ ଝଞ୍ଜା ହେଉଥିବାବେଳେ ଆମ୍ଭେମାନେ ଏହି ଶବ୍ଦ ଶୁଣିପାରୁ ।

ବିଶ୍ୱସୃଷ୍ଟିର ଆରମ୍ଭରେ ଚତୁର୍ଦ୍ଦିଗ ଜଳମଗ୍ନ ଥିଲା । ଜଳ ଓ ବାୟୁର ସଂଯୋଗରେ ନାଦ ଉତ୍ପତ୍ତି ହେଲା । ନାଦ ଅନେକ ପ୍ରକାର । ତହିଁମଧ୍ୟରୁ କେତେକ ଶବ୍ଦ ଶୁଣିଲେ କାନ ମୁନ୍ଦିଦେବାକୁ ଇଚ୍ଛାହୁଏ । ଏଗୁଡ଼ିକ ବିରକ୍ତିକର । ପୁଣି କେତେକ ଶବ୍ଦ କାନକୁ ଅତି ମଧୁର ଲାଗେ । ନାଦଜଗତ୍ ମଧ୍ୟରେ ଏପରି ମାତ୍ର ସାତଗୋଟି ସ୍ୱର ମିଳେ । ଏହି ସାତୋଟି ମାତ୍ର ସ୍ୱର ବାଛିନେଇ ସଙ୍ଗୀତର ସୃଷ୍ଟି ଘଟିଅଛି । ଏହି ସପ୍ତସ୍ୱର—ଷଡ଼ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ ଓ ନିଷାଦ ନାମରେ ଅଭିହିତ । ଉଚ୍ଚାରଣର ସୁବିଧା ଲାଗି ଏହି ପଦଗୁଡ଼ିକର ପ୍ରଥମ ଅକ୍ଷରମାନଙ୍କୁ ଗ୍ରହଣ କରାଯାଇ ଯଥାକ୍ରମେ ସପ୍ତସ୍ୱରକୁ ସା, ରେ, ଗା, ମା, ପା, ଧା, ନି କୁହାଯାଏ ।

କେହି କେହି କହନ୍ତି, ଏହି ସ୍ୱରଗୁଡ଼ିକ ମୟୂର, ବୃଷଭ, ଛାଗ ଇତ୍ୟାଦି ଜୀବମାନଙ୍କ କଣ୍ଠସ୍ୱରରୁ ଗୃହୀତ; କିନ୍ତୁ ନାଦ ବା ସଙ୍ଗୀତର ସୃଷ୍ଟି ପୂର୍ବରୁ ପୃଥିବୀରେ ଜୀବଜଗତ୍ର ସତ୍ତା ନ ଥିଲା । ଅତଏବ ଜୀବଙ୍କ ସ୍ୱରରୁ ସ୍ୱରସୃଷ୍ଟି ଘଟିବା ସମ୍ଭବ ନୁହେଁ । ସଙ୍ଗୀତର ସ୍ୱରଗୁଡ଼ିକ ସହିତ କେତେକ ଜୀବଙ୍କର କଣ୍ଠସ୍ୱରର ସାମଞ୍ଜସ୍ୟ ଥିବାରୁ ଅନେକେ ଏହିପରି ଧାରଣା ପୋଷଣ କରିଥାନ୍ତି ।

ଉଚ୍ଚ ଓ ନୀଚ ଶବ୍ଦ ଭେଦରେ ଏହି "ସାରେଗାମାପାଧାନି" ସପ୍ତସ୍ୱର ତିନିଗୋଟି ସ୍ୱରରେ ଉଚ୍ଚାରିତ ହୁଏ ଏବଂ ଏହାକୁ ସପ୍ତକ କହନ୍ତି । ଏଣୁ ସଙ୍ଗୀତ-ରାଜ୍ୟରେ ମନ୍ଦ୍ର, ମଧ୍ୟ ଓ ତାର ନାମରେ ତିନିଗୋଟି ମାତ୍ର ସପ୍ତକ ବିଦ୍ୟମାନ । ଏହାକୁ ଉଦାରା, ମୁଦାରା ଓ ତାରା ବୋଲି ମଧ୍ୟ କୁହାଯାଏ । ମାନବର କଣ୍ଠ ଅନୁସାରେ ଏହି

ସପ୍ତସ୍ୱରଗୁଡ଼ିକ ସୃଷ୍ଟି । ମନୁଷ୍ୟର ନାଭି, ବକ୍ଷ ଓ ତାଳୁରୁ ଯଥାକ୍ରମେ ଏହି ତିନିଗୋଟି ସପ୍ତକର ସ୍ୱର ନିର୍ଗତ ହୁଏ ।

ସାତଗୋଟି ସ୍ୱର ବିଭିନ୍ନ ରୀତିରେ ବ୍ୟବହାର କରି କରି ରାଗରାଗିଣୀ ପ୍ରସ୍ତୁତ ହୋଇଅଛି । ଭରତ ଓ ମାତଙ୍ଗ ପ୍ରଭୃତି ଋଷିମାନେ ସଙ୍ଗୀତଶାସ୍ତ୍ରର ଆଦିରଚୟିତା ।

ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ଜଳ, ସ୍ଥଳ, ପବନ, ତରୁଲତା ଓ ଜୀବଜଗତ ସମସ୍ତେ ସଙ୍ଗୀତର ଉପାସକ ଓ ନିୟମାଧୀନ । ସଙ୍ଗୀତର ପ୍ରଧାନ ଅଙ୍ଗ ତାଳ ଓ ଲୟ । ତାଳ, କାଳ ବା ସମୟର ନିୟାମକ । ତାଳ ପରିମାଣ ଯେପରି ପୃଥିବୀ ଓ ଗ୍ରହ ଉପଗ୍ରହ ଗତି କରୁଅଛନ୍ତି । ମନୁଷ୍ୟ ବା ପଶୁପକ୍ଷୀ କେହି ତାଳର ସାମ୍ୟ ନ ରଖି ଚାଲିପାରନ୍ତି ନାହିଁ । ଘଣ୍ଟାର ଟିକ୍ ଟିକ୍ ଶବ୍ଦ କାଳ ବା ସମୟର ଗତି ପ୍ରଦର୍ଶନ କରେ । ଝରଣାର ଝର୍ଝର ନାଦ, ପକ୍ଷୀର କଳ କୂଜନ, ପତ୍ର ମର୍ମର ଧ୍ୱନି ମଧ୍ୟରେ ସଙ୍ଗୀତର ସ୍ୱର ବିଦ୍ୟମାନ । ତେଣୁ ପୃଥିବୀ ସଙ୍ଗୀତମୟ । ଲୟ ତାଳପତନର ସାମ୍ୟ ରକ୍ଷା କରେ । ଏହା ଗତିନିୟାମକ ।

ଜନନୀକଣ୍ଠର ସଙ୍ଗୀତଶ୍ରବଣରେ ଅବୋଧ ଶିଶୁ ଅଳ୍ପକାଳ ମଧ୍ୟରେ ନିଦ୍ରାଗତ ହୁଏ । ନାଗେଶ୍ୱର ବାଦ୍ୟସ୍ୱରରେ ବିଷଧର ସର୍ପ ଅକ୍ଳେଶରେ ଧରାହୁଏ । କଥିତ ଅଛି ଯେ ନିୟମାନୁସାରେ କେତେକ ରାଗରାଗିଣୀ ଗାଇଲେ ପ୍ରକୃତିର ଶାନ୍ତିଗତି ମଧ୍ୟ ପରିବର୍ତ୍ତିତ ହୁଏ ।

ଲୋକପ୍ରବାଦ ଯେ, ସଙ୍ଗୀତବିଦ୍ୱାନ୍ ସାଧୁ ହରିଦାସ ତୋଡ଼ି ରାଗିଣୀ ଗାଉଥିଲେ । ସେହି ସ୍ୱରରେ ଆକୃଷ୍ଟ ହୋଇ ବନର ମୃଗ ତାଙ୍କର ଆଶ୍ରମ ନିକଟକୁ ଆସୁଥିଲେ । ଯୋଗୀ ହରିଦାସ ମୃଗର

ଗଳାରେ ପୁଷ୍ପମାଳା ପିନ୍ଧାଇ ଦେଇ ଯାଉଥିଲେ । ଆକବରଙ୍କ ବାଦ୍‌ଶାହାଙ୍କ ରାଜସଭାର ଶ୍ରେଷ୍ଠ ଗାୟକ ତାନ୍‌ସେନ୍ ଦୀପକ ରାଗ ଗାଇ, ଅଗ୍ନି ଓ ମହ୍ଲାର ରାଗ ଗାଇ ବର୍ଷା ସୃଷ୍ଟି କରି ପାରୁଥିଲେ ।

ଭାରତରେ ପ୍ରଥମେ ଗୋଟିଏ ରୀତିର ସଙ୍ଗୀତ ପ୍ରଚଳିତ ଥିଲା । କାଳକ୍ରମେ ସପ୍ତଦଶ ଶତାବ୍ଦୀରେ ଏହା ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ଆଖ୍ୟାରେ ଦୁଇ ଭାଗରେ ବିଭକ୍ତ ହୋଇଅଛି । ଏହି ଦୁଇଟି ଭାରତ ସଙ୍ଗୀତର ବିଶିଷ୍ଟ ଶାଖା ହୋଇଥିଲେ ମଧ୍ୟ ଓଡ଼ିଶାରେ ଏକ ସ୍ୱତନ୍ତ୍ର ରୀତିର ସଙ୍ଗୀତଧାରା ଅତି ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସୁଅଛି । ଚୀନ ପରିବ୍ରାଜକ ହୁଏନ୍‌ସାଂ ଷଷ୍ଠ ଶତାବ୍ଦୀରେ ଉତ୍କଳୀୟ-ମାନେ ଗୀତ, ନୃତ୍ୟ, ଇତ୍ୟାଦି ସଙ୍ଗୀତକଳାର ବିଶେଷଚର୍ଚ୍ଚା କରୁଥିବାର ଉଲ୍ଲେଖ କରି ଯାଇଅଛନ୍ତି । ଅବଶ୍ୟ ଏହା ଭାରତୀୟ ସଙ୍ଗୀତପଦ୍ଧତିରୁ ଭିନ୍ନ ନୁହେଁ, କିନ୍ତୁ ବିଭିନ୍ନ ସ୍ଥାନର ଜଳବାୟୁ, ରୀତିନୀତି, ଅଭ୍ୟରବ୍ୟବହାରଗତ ପାର୍ଥକ୍ୟ ଏବଂ ସ୍ୱତନ୍ତ୍ରତା ହେଉନ ସଙ୍ଗୀତର ପ୍ରକାଶଧାରା ପୃଥକ୍ ହେବା ସ୍ୱାଭାବିକ । ବହୁକାଳରୁ ଆମ ରାଜ୍ୟରେ ପ୍ରଚଳିତ ସଙ୍ଗୀତଧାରା 'ଓଡ଼ିଶୀ' ରୂପେ ଖ୍ୟାତ ।

କୃଷ୍ଣ ଦାସ, ପଣ୍ଡିତ ଦାମୋଦର ମିଶ୍ର, ଗୋପାଳ ନାୟକ, ମଧୁସୂଦନ ମିଶ୍ର, ହଳଧର ମିଶ୍ର, ଗଜପତି ନାରାୟଣ ଦେବ ଓ ରଘୁନାଥ ରଥ ପ୍ରଭୃତିଙ୍କ ନାମ ଉତ୍କଳର ସଙ୍ଗୀତଶାସ୍ତ୍ରପ୍ରଣେତା-ମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ ।

ସଙ୍ଗୀତର ତାଳଲୟର ସମନ୍ୱୟ ଲାଗି ବାଦ୍ୟଯନ୍ତ୍ରର ସୃଷ୍ଟି । ସ୍ୱର ମିଳାଇ ଗାଇବା ଲାଗି ଏକତାରା, ତାନପୁରା, ବୀଣା ଓ ହାରଣ-ହସ୍ତକ ପ୍ରଭୃତି ତାରଯନ୍ତ୍ରର ନାମ ସଙ୍ଗୀତଶାସ୍ତ୍ରରେ ଦେଖିବାକୁ

5

ମିଳେ । ବୀଉଣହସ୍ତକ ନାମକ ତନ୍ତ୍ରଯୁକ୍ତ ଯନ୍ତ୍ରଟି ଉତ୍କଳରେ ପ୍ରଚଳିତ ଥିବାର ଶାସ୍ତ୍ରପ୍ରମାଣ ଥିଲେ ମଧ୍ଯ କେବେ ଏହାର ସମ୍ପୂର୍ଣ୍ଣ ଲୋପ ହୋଇଅଛି, ତାହାର କୌଣସି ଉଲ୍ଲେଖ ଦେଖାଯାଏ ନାହିଁ । କଥିତ ଅଛି ଯେ ଯୋଗୀ ବା ନାଥମାନେ ବର୍ତ୍ତମାନ ବ୍ୟବହାର କରୁଥିବା ନିନ୍ଦଗାଯନ୍ତ୍ର ଲୁପ୍ତ ବୀଉଣହସ୍ତକର ନିଦର୍ଶନ ।



[ ବିଭିନ୍ନ ବାଦ୍ୟଯନ୍ତ୍ର ]

କାଳକ୍ରମେ ସୀତାର, ବାୟଲିନ ବା ବେହେଲା, ଏସ୍ରାଜ ଓ ସାରଙ୍ଗୀ ପ୍ରଭୃତି ଅନ୍ୟାନ୍ୟ କେତେକ ତାରଯନ୍ତ୍ର ଉଦ୍ଭାବିତ ହୋଇଅଛି ।

ତାଳର ସମତା ରକ୍ଷା ଲାଗି ମର୍ଦ୍ଦଳ, ମୃଦଙ୍ଗ, ପଖଵାଜ ପ୍ରଭୃତି ତାଳବାଦ୍ୟଯନ୍ତ୍ର ବହୁଦିନରୁ ପ୍ରଚଳିତ । ବାୟାଁ ତାବଲା ଓ ଢୋଲକ ଇତ୍ୟାଦି ବାଦ୍ୟଯନ୍ତ୍ର ପରେ ସୃଷ୍ଟି ହୋଇଅଛି । ଆମ ଦେଶରେ ବିଦେଶୀ ପ୍ରଭାବ ହେତୁ କ୍ରମେ ହାର୍‌ମୋନିୟମ୍, ପିଆନୋ, ଗିଟାର୍ ଓ ବେଞ୍ଜୋ ପ୍ରଭୃତି କେତେ ପ୍ରକାର ଯନ୍ତ୍ରର ପ୍ରଚଳନ ଘଟିଅଛି । ମାତ୍ର ଏଗୁଡ଼ିକ ଭାରତୀୟ ସଙ୍ଗୀତ ପ୍ରକାଶ ପକ୍ଷେ ଅନୁକୂଳ ନୁହେଁ ।

# ନୃତ୍ୟ

ଭାରତୀୟ ନୃତ୍ୟ ସାଧାରଣତଃ ଦୁଇ ଭାଗରେ ବିଭକ୍ତ; ଯଥା—ତାଣ୍ଡବ ଓ ଲାସ୍ୟ ।

ତାଣ୍ଡବର ନୃତ୍ୟଭଙ୍ଗୀ ବିକାଶରେ ସ୍ୱତନ୍ତ୍ରତା ଥିବାରୁ ଏହାକୁ ପୁରୁଷନୃତ୍ୟ କୁହାଯାଏ ଏବଂ ଏହା ସ୍ତ୍ରୀମାନଙ୍କଦ୍ୱାରା ପ୍ରଦର୍ଶିତ ହେବାକୁ ଶାସ୍ତ୍ରକାରମାନେ ବାରଣ କରି ଯାଇଛନ୍ତି । ଲାସ୍ୟ ହିଁ ସ୍ତ୍ରୀନୃତ୍ୟ । ଏହା ଲଳିତ ନୃତ୍ୟ ।

ଭାଷାର ସୃଷ୍ଟି ପୂର୍ବରୁ ନୃତ୍ୟ ବିଦ୍ୟମାନ । ନୃତ୍ୟ ଓ ଅଭିନୟ-ଦ୍ୱାରା ମନୋଭାବ ସହଜରେ ଅପରକୁ ବୁଝାଇହୁଏ । କେବଳ ସେତିକି ନୁହେଁ, ଭାଷାଦ୍ୱାରା କୌଣସି ଭାବ ପ୍ରକାଶ ଲାଗି ଯେତେ କାଳ ଆବଶ୍ୟକ, ନୃତ୍ୟଭଙ୍ଗୀ ଏବଂ ଅଭିନୟ ସାହାଯ୍ୟରେ ତହିଁରୁ ଅଳ୍ପ ସମୟ ଲାଗେ ।

ମନୁଷ୍ୟ ତାହାର ବିଭିନ୍ନ ଅଙ୍ଗବିକ୍ଷେପ ଓ ଅଭିନୟ ପ୍ରଦର୍ଶନ-ଦ୍ୱାରା ନୃତ୍ୟ ମାଧ୍ୟମରେ ଭାବ ଓ ରସ ପ୍ରକାଶ କରେ । ଏହି କ୍ରିୟାକୁ ଶାସ୍ତ୍ରରେ କର୍ମ ବୋଲି କୁହାଯାଏ; ଯଥା—ଶିରକର୍ମ, ଚକ୍ଷୁକର୍ମ ଓ ହସ୍ତକର୍ମ ଇତ୍ୟାଦି । ଉତ୍କଳରେ ଏହି 'କର୍ମ'କୁ ଅବଲମ୍ବ, ଲକ୍ଷଣା ବା ପାରିକା ବୋଲି କୁହାଯାଏ ।

ଭାରତରେ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର ନୃତ୍ୟ ଦେଖାଯାଏ । 'ଭାରତନାଟ୍ୟମ୍' ବୋଲି ଦକ୍ଷିଣାଞ୍ଚଳରେ ଏକପ୍ରକାର ନୃତ୍ୟ ପ୍ରଚଳିତ । ଏହା କିନ୍ତୁ ଭରତ ମୁନି ପ୍ରଣୀତ 'ଭାରତନାଟ୍ୟମ୍' ନୁହେଁ । ଏହି ନୃତ୍ୟର ଧାରା ଭାରତୀୟ ନୃତ୍ୟକଳାର ରୀତି ଅନୁଯାୟୀ ହେଲେ ମଧ୍ୟ ଏହାର କେତେକ ବିଷୟରେ ସ୍ୱତନ୍ତ୍ରତା ଅଛି ।

କଥକାଳୀ ବା କଥାକଳୀ ନୃତ୍ୟର ଅଙ୍ଗାଭିନୟ ସ୍ୱତନ୍ତ୍ର । ପୌରାଣିକ ଉପାଖ୍ୟାନମାନ ବହୁଚରିତ୍ରମାଣରେ ଏହି ନୃତ୍ୟର ବିଷୟବସ୍ତୁରୂପେ ଗୃହୀତ । ଏହି ନୃତ୍ୟର କଳାକାର-ମାନେ ବିବିଧ ବେଶ, କଞ୍ଚି ଓ ମୁଖା ବ୍ୟବହାର କରନ୍ତି । କଥକ ନୃତ୍ୟ ତାଳ, ବାଦ୍ୟ ଓ ହସ୍ତଭଙ୍ଗୀ ବହୁଳ । ବାଦଶାହମାନଙ୍କ ରାଜତ୍ୱ କାଳରେ ଏହି ନୃତ୍ୟ ଉଦ୍ଭାବିତ ହୋଇଅଛି ।

ମଣିପୁରୀ ନୃତ୍ୟ ସାଧାରଣତଃ ରାଧାକୃଷ୍ଣ ଲୀଳାରସର ପ୍ରକାଶକ ଏବଂ କୀର୍ତ୍ତନର ସ୍ୱର ସହିତ ଖୋଳ ମୃଦଙ୍ଗ ବାଦ୍ୟ ଯୋଗେ ଏହା ପ୍ରଦର୍ଶିତ ହୁଏ ।



। ଓଡ଼ିଶୀ ନୃତ୍ୟ ।

ଓଡ଼ିଶୀ ନୃତ୍ୟ— ଏହା ଉତ୍କଳରେ ପ୍ରଚଳିତ । ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ମାତ୍ର ମଧ୍ୟରେ ଯେଉଁ ନୃତ୍ୟର ପ୍ରଚଳନ କଥା ବହୁକାଳରୁ ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି, ଓଡ଼ିଶୀ ନୃତ୍ୟ ତାହାର ଅଙ୍ଗୀଭୂତ ନୃତ୍ୟକଳା । ଏହି ନୃତ୍ୟରେ ଗୀତ, ବାଦ୍ୟ ଓ ନୃତ୍ୟର ସମନ୍ୱୟ ଘଟେ ଓ ଶାସ୍ତ୍ରୀୟ ବାଧି ଅନୁସରଣରେ ଏହା ପ୍ରଦର୍ଶିତ ହୁଏ । ବିଭିନ୍ନ ରସ

ଓ ଭାବପ୍ରକାଶ ଲାଗି ବିଭିନ୍ନ ଗୀତର ପଦମାନ ଏବଂ ଅନ୍ୟାନ୍ୟ ଆଙ୍ଗିକ ଅଭିନୟମାନ ଏ ନୃତ୍ୟରେ ବ୍ୟବହୃତ ।

ଛଉ ନାମକ ଏକଶ୍ରେଣୀର ନୃତ୍ୟ ଓଡ଼ିଶାରେ ପ୍ରଚଳିତ । କେବଳ ହସ୍ତପଦାଦିର ଅଭିନୟଦ୍ୱାରା ଭିନ୍ନ ଭିନ୍ନ ଭାବପ୍ରକାଶ ଏହି ନୃତ୍ୟର ବିଶେଷତ୍ୱ । ଛଉ ଓଡ଼ିଶାର ସ୍ୱତନ୍ତ୍ର ନୃତ୍ୟକଳା ବୋଲି ପରିଗଣିତ ହେଉଅଛି । ସରାଇକଳା ଓ ମୟୂରଭଞ୍ଜର ଛଉନୃତ୍ୟ ଦେଶ ବିଦେଶରେ ସୁପରିଚିତ ।

ଏଗୁଡ଼ିକ ଛଡ଼ା ଆହୁରି ଅନେକ ପ୍ରକାର ପଲ୍ଲୀନୃତ୍ୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପରମ୍ପରାକ୍ରମେ ପ୍ରଚଳିତ ହୋଇ ଆସୁଅଛି । ମାନବ-ହୃଦୟର ଭାବ ଓ ରସ ପ୍ରକାଶ କରିବାରେ ଏଗୁଡ଼ିକ ବିଶେଷ ଭାବରେ ସମର୍ଥ ।

ଓଡ଼ିଶୀ ସଙ୍ଗୀତ ଓଡ଼ିଆ ସାହିତ୍ୟର ମୂଳାଧାର କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ଭାଷା ଯେଉଁ ଛନ୍ଦ, ଚଉତିଶା ଏବଂ ଚୌପଦୀମାନଙ୍କଦ୍ୱାରା ଚମତ୍କୃତ, ତାହା ସଙ୍ଗୀତର ସ୍ୱରସମ୍ବଳିତ ହୋଇଥିବାରୁ ସହଜରେ ଲୋକରେ ପ୍ରଚଳିତ ହୋଇ ପାରିଅଛି । ଆମର ପୁରାତନ କବି ଏବଂ ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ ବଳରାମ ଦାସ, ସାରଳାଦାସ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ପ୍ରଭୃତି ସେମାନଙ୍କ ରଚନାକୁ ସଙ୍ଗୀତମୟ କରି ଯୁଗଯୁଗାନ୍ତର ଲାଗି ଅମର ହୋଇ ରହିଅଛନ୍ତି ।

## ପ୍ରଶ୍ନ

୧ । ଓଡ଼ିଶାର ସଙ୍ଗୀତ ଓ ନୃତ୍ୟକଳା ସମ୍ବନ୍ଧରେ ଯାହା ଜାଣ ଲେଖ ।

୨ । ଲାସ୍ୟ, ତାଣ୍ଡବ, ସପ୍ତସ୍ୱର, ସପ୍ତକ, ପାରିଜା, କଥକାଲୀ, ମଣିପୁରୀ, ଛଉ—ଏହି ଶବ୍ଦଗୁଡ଼ିକ ସଙ୍ଗୀତ ଓ ନାଟ୍ୟଶାସ୍ତ୍ରରେ କେଉଁ ଅର୍ଥରେ ବ୍ୟବହୃତ ବୁଝାଇଦିଅ ।

୩ । ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର:—
ସଙ୍ଗୀତଜ୍ଞ, ଉପାଖ୍ୟାନ, ଅନୁକୂଳ, ସମାବେଶ, ରଚୟିତା ।

୪ । ବିପରୀତ ଶବ୍ଦ ଲେଖ—
ଅନୁକୂଳ, ଗୃହୀତ, ସାମଞ୍ଜସ୍ୟ, ସ୍ୱାଭାବିକ, ଅମର ।

---

# ବିଜ୍ଞାନ ଓ ତାହାର ବ୍ୟବହାର

ଆଜିକାଲି ବିଜ୍ଞାନର ଯୁଗ । ପୃଥିବୀରେ ସବୁଆଡ଼େ ବିଜ୍ଞାନର ଜୟଧ୍ୱଜା ଉଡ଼ୁଅଛି । ଇଂଲଣ୍ଡ, ଆମେରିକା, ରୁଷିଆ ପ୍ରଭୃତି ରାଜ୍ୟରେ ବୈଜ୍ଞାନିକମାନେ ଏହି ବିଜ୍ଞାନଶାସ୍ତ୍ରରେ ପାରଦର୍ଶିତା ଲାଭକରି ଖୁବ୍ ସୁନାମ ଅର୍ଜନ କରିଅଛନ୍ତି । ନୂଆ ନୂଆ ତଥ୍ୟ ଆବିଷ୍କୃତ ହେବା ଦ୍ୱାରା କେତେ ଅଦ୍ଭୁତ ଓ ଆଶ୍ଚର୍ଯ୍ୟଜନକ ଜିନିଷ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହେଉଅଛି । ଏହାଦ୍ୱାରା ଲୋକମାନଙ୍କର ନାନାପ୍ରକାର ସୁବିଧା ହେବା ସଙ୍ଗେ ସଙ୍ଗେ ସୁଖସମୃଦ୍ଧି ବଢ଼ୁଅଛି । ଅପର ପକ୍ଷରେ ଧ୍ୱଂସ କରିବାର ପ୍ରଣାଳୀ ମଧ୍ୟ ଅନେକ ଗୁଣରେ ବଢ଼ିଯାଇଅଛି । ଶହେ ବର୍ଷ ତଳର ମାନବ ସମାଜ ପ୍ରତି ଦୃଷ୍ଟି ଦେଲେ ଦେଖାଯିବ ଯେ ସେତେବେଳେ ଲୋକମାନେ ଅନେକ ଅସୁବିଧାରେ ଥିଲେ । ମଟର, ରେଳ, ବ୍ୟୋମଯାନ ପ୍ରଭୃତି ନ ଥିଲା କି ଆଜିକାଲି ପରି ବିରାଟ କଳକାରଖାନାପୂର୍ଣ୍ଣ ସହର ନ ଥିଲା । ସେତେବେଳେ କଟକରୁ ପୁରୀ ଯିବାକୁ ହୁଏତ ସପ୍ତାହେ ଲାଗିଯାଉଥିଲା । ଯାତ୍ରାକାଳରେ ଯାତ୍ରୀମାନେ

ନିଜ ଜୀବନକୁ ପାଣି ଛଡ଼ାଇ ଦେଉଥିଲେ ଏବଂ ସେମାନଙ୍କ ଘରେ କାନ୍ଦବୋବାଳି ପଡ଼ିଯାଉଥିଲା । କେତେ ବର୍ଷ ତଳେ ଦେଶର ଅବସ୍ଥା ଏମିତି ଥିଲା; କିନ୍ତୁ ଆଜି ଅବସ୍ଥାର କି ପରିବର୍ତ୍ତନ ହୋଇଅଛି ! କଟକରୁ ରାତି ନଅଟାବେଳେ ଖାଇ ପିଇ ରେଳରେ ଶୋଇଲେ ପରଦିନ ସକାଳେ କଲିକତାରେ ନିଦଭାଙ୍ଗୁଛି । କଲିକତାରେ କାମ ଧାମ ଶେଷ କରି, ସିନେମା ଥିଏଟର ଦେଖି ସେହିଦିନ ରାତି ରେଳରେ ବସିଲେ ପରଦିନ ପୁନରପି କଟକରେ ପହଞ୍ଚି ହେଉଅଛି । ଦିନକ ମଧ୍ୟରେ ଯେ ଜଣେ ଲୋକ ଏତେ କାମ କରିପାରେ, ଏହା କେହି ବିଶ୍ୱାସ କରିପାରିବେ ନାହିଁ ।

ଏ ତ ଗଲା ରେଳ କଥା । ଉଡ଼ାଜାହାଜ ତୁଳନାରେ ଆଜି ରେଳ ପୁରୁଣା ହୋଇଗଲାଣି । ଆଉ କିଛିଦିନ ଗଲେ ଉଡ଼ାଜାହାଜର ପ୍ରସାର ଏତେ ବେଶୀ ହୋଇଯିବ ଯେ ଜଣେ ଲୋକ ପୁରୀରେ ରହି କଟକରେ ଚାକିରି କରିପାରିବ । ଦଶଟା ବେଳେ ଖାଇ ଉଡ଼ାଜାହାଜରେ ବସିଲେ ସାଢ଼େ ଦଶଟାରେ କଟକ କଚେରିରେ କାମ କରିପାରିବ ଓ ଚାରିଟାବେଳେ ବାହାରି ସାଢ଼େ ଚାରିଟାରେ ପୁଣି ଘରେ ପହଞ୍ଚିପାରିବ । ଦେଢ଼ମାଇଲ ଚାଲିଗଲେ ଜଣେ ଲୋକକୁ ଯେତିକି ସମୟ ଲାଗିବ, ସେତିକି ସମୟରେ ଉଡ଼ାଜାହାଜରେ ଶହେ ମାଇଲ ଯାଇହେବ । ଏସବୁ ବିଜ୍ଞାନର କୃତିତ୍ୱ । ଆଜିକାଲି ବୈଜ୍ଞାନିକ ଯୁଗରେ ଦୂରତାର ମୂଲ୍ୟ କିଛି ନାହିଁ । ଦୂରତାକୁ ଖାଲି ଯେ ଆମ୍ଭେମାନେ ଉଡ଼ାଜାହାଜଦ୍ୱାରା ଜିତିଛୁ ତାହା ନୁହେଁ, ବିଜ୍ଞାନ ଆମ୍ଭମାନଙ୍କ ହାତରେ ଆହୁରି ଅନେକ ନୂତନ ସାମଗ୍ରୀ ଦେଇ ପାରିଅଛି । କୌଣସି ଏକ ସ୍ଥାନରେ ବସି ଟେଲିଫୋନରେ ହଜାର ହଜାର କୋଶ ଦୂରରେ ଥିବା ଲୋକମାନଙ୍କ ସଙ୍ଗରେ ଆନନ୍ଦରେ କଥାବାର୍ତ୍ତା କରିପାରୁଅଛୁ ।

ଟେଲିଫୋନକୁ ଉଠାଇ କାନ ପାଖରେ ରଖି ଡ଼ାକିଲେ ଦିଲ୍ଲୀରେ ଜଣେ ଲୋକ ଜବାବ ଦେଉଅଛି; ବମ୍ବେର ଲୋକ ଖବର ଦେଉଅଛି । ସବୁ ସମ୍ବାଦ ପାଇ ଆମ୍ଭେମାନେ ସେହି ଅନୁସାରେ କାମ କରି ପାରୁଅଛୁଁ । ରେଡ଼ିଓ ବା ବେତାରଯନ୍ତ୍ରରେ ଲଣ୍ଡନ, ଆମେରିକା, ଚୀନ, ଜାପାନ ପ୍ରଭୃତି ସୁଦୂର ଦେଶର ବାର୍ତ୍ତା ଏକ ମୁହୂର୍ତ୍ତରେ ଶୁଣି ପାରୁଅଛୁଁ । ଲଣ୍ଡନରେ ଝଡ଼ ହୋଇ ଛଅଟା ବେଳେ, ଆମ୍ଭେମାନେ ଖବର ପାଇଲୁ ଛଅଟା ଦେଇ ମିନିଟରେ । ଆମେରିକାରେ ଜଣେ ମୃତ୍ୟୁଶଯ୍ୟାରେ ଶାୟିତ, ପାଞ୍ଚଟାବେଳେ ଖବର ପାଇଲୁ ତାହାଙ୍କର ନାଡ଼ୀର ଗତି ସମ୍ବନ୍ଧରେ, ପୁଣି ପନ୍ଦର ମିନିଟରେ ତାହାଙ୍କର ମୃତ୍ୟୁ ଖବର ଯନ୍ତ୍ର ସାହାଯ୍ୟରେ ଜଣାଗଲା । ତେବେ ଦୂରତାର ଅସ୍ତିତ୍ୱ ଆଉ ରହିଲା କେଉଁଠି ? ଖାଲି ଏତିକି ନୁହେଁ, ହଜାର ହଜାର ମାଇଲ ଦୂରରୁ କଥା ଶୁଣି ବୈଜ୍ଞାନିକମାନେ ସନ୍ତୁଷ୍ଟ ନୁହନ୍ତି । ଟେଲିଭିଜନ ନାମକ ଯନ୍ତ୍ର ସାହାଯ୍ୟରେ ସବୁ ଘଟଣା ଆଖିରେ ଦେଖିବା ଲାଗି ମଧ୍ୟ ବନ୍ଦୋବସ୍ତ ହେଲାଣି । ଯେଉଁ ଲୋକ କଥାବାର୍ତ୍ତା କରୁଛି, ତାହାକୁ ଏହି ଯନ୍ତ୍ର ସାହାଯ୍ୟରେ ଦେଖିହେବ ।

ବର୍ଣ୍ଣାଡ୍ ଶ' ତାଙ୍କର ଗୋଟିଏ ନାଟକରେ ଲେଖିଅଛନ୍ତି— କିଛି ଦିନ ମଧ୍ୟରେ ବିଜ୍ଞାନ ଏତେଦୂର ଉନ୍ନତି କରିବ ଯେ ଦୂରତ୍ୱ ପ୍ରଶ୍ନ ଏକାବେଳକେ ଲୋପ ପାଇବ । ସେତେବେଳକୁ ସମସ୍ତ ପୃଥିବୀର ରାଜଧାନୀ ଗୋଟିଏ ଜାଗାରେ ରହିବ । ପୃଥିବୀର ବିଭିଆଡ଼େ ଭିନ୍ନ ଭିନ୍ନ ବିଭାଗର ମନ୍ତ୍ରୀମାନେ ଥିଲେ ସୁଦ୍ଧା ବେତାର ଯନ୍ତ୍ର ଓ ଟେଲିଭିଜନ୍ ସାହାଯ୍ୟରେ ସେମାନଙ୍କର ଏକତ୍ର ସମ୍ମେଳନ ଉକ୍ତ ରାଜଧାନୀରେ ସମ୍ଭବ ହୋଇ ପାରିବ; କିନ୍ତୁ ସମସ୍ତେ ଭିନ୍ନ ଭିନ୍ନ ଜାଗାରେ ଥିବେ । ପରସ୍ପର ମଧ୍ୟରେ ହଜାର ହଜାର ମାଇଲ

ବ୍ୟବଧାନ ଥିଲେ ସୁଦ୍ଧା ଖାଲି କଳ ମୋଡ଼ିଲେ ପରସ୍ପର ପରସ୍ପରଙ୍କୁ ଦେଖିପାରିବେ ।

ଏତିକି ନୁହେଁ, ବିଜ୍ଞାନ ଆହୁରି ଅନେକ ପ୍ରକାର ଅଦ୍ଭୁତ ଜିନିଷ ବାହାର କରିପାରିଅଛି । ବିଜ୍ଞାନର ଏସବୁ ଉପକାର ବିଷୟ ଚିନ୍ତାକରି ଆନନ୍ଦରେ ବିଭୋର ହେବା ସଙ୍ଗେ ସଙ୍ଗେ ତାର ଅପକାରଗୁଡ଼ିକ ମଧ୍ୟ ଆଖିଆଗରେ ନାଚିଯାଏ । ଆମ ସମକ୍ଷରେ ଯେଉଁ ପୃଥିବୀବ୍ୟାପୀ ଭୟଙ୍କର ଯୁଦ୍ଧ ହୋଇଗଲା, ସେଥିପାଇଁ ବିଜ୍ଞାନ ଦାୟୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୧୪ରେ ଯେଉଁ ମହାଯୁଦ୍ଧ ହୋଇଥିଲା, ତାହା ୫୦୦ ବର୍ଷ ତଳର ଯେ କୌଣସି ବଡ଼ ଯୁଦ୍ଧଠାରୁ ଅନେକ ଗୁଣରେ ଭୟଙ୍କର ଏବଂ ୧୯୩୯ ଠାରୁ ୧୯୪୫ ମସିହା ପର୍ଯ୍ୟନ୍ତ ଯେଉଁ ମହାଯୁଦ୍ଧ ହେଲା, ତାହା ପ୍ରଥମ ମହାଯୁଦ୍ଧଠାରୁ ସହସ୍ରଗୁଣରେ ଭୟାବହ । ପୂର୍ବେ ସୈନିକମାନେ ଖଣ୍ଡା ତରବାରି ଧରି, ଘୋଡ଼ା ହାତୀ କିମ୍ବା ରଥରେ ଚଢ଼ି ଅଥବା ପଦାତିକରୂପେ ଯୁଦ୍ଧ କରୁଥିଲେ । ସୈନ୍ୟ ସୈନ୍ୟ ସହିତ ଯୁଦ୍ଧରେ ବ୍ୟାପୃତ ରହୁଥିଲେ । ନିରସ୍ତ୍ର ନରନାରୀ, ବୃଦ୍ଧ ଓ ବାଳକ ବାଳିକାମାନଙ୍କୁ କେହି ଆକ୍ରମଣ କରୁ ନ ଥିଲେ; କିନ୍ତୁ ଆଜିକାଲି ଯୁଦ୍ଧରେ ସେ ନୀତି ନାହିଁ । ଆକାଶମାର୍ଗରେ ହଜାର ହଜାର ସଂଖ୍ୟାରେ ବ୍ୟୋମଯାନ ଆସି ବୋମା ବର୍ଷି ଦେଇଯାଉଅଛି । କାହା ଉପରେ ପଡ଼ିଲା, ତାର ହିସାବ କେହି ରଖେ ନାହିଁ । ରୋଗୀମାନେ ରୋଗଯନ୍ତ୍ରଣାରେ ଛଟପଟ ହେଉଥିବା ବେଳେ ଉପରୁ ସର୍ବଗ୍ରାସୀ ବୋମା ଆସି ସେମାନଙ୍କୁ ଧୂଳି କରିଦେଇ ଯାଏ କିମ୍ବା ଆହୁରି କ୍ଷତବିକ୍ଷତ କରିଦିଏ । ନିରୀହ ବାଳକବାଳିକାମାନେ ସରଳଭାବରେ ହସି ହସି ଖେଳୁଥିବା ବେଳେ ହଠାତ ଆକାଶମାର୍ଗରୁ ସେହିମାନଙ୍କ ଉପରେ ଅସଂଖ୍ୟ ସର୍ବଧ୍ୱଂସୀ ବୋମା ଅଜାଡ଼ି ହୋଇପଡ଼େ । ଏମାନଙ୍କର ଏହି ଅକାଳମୃତ୍ୟୁ ପାଇଁ

ଦାୟୀ କିଏ ? ବିଜ୍ଞାନ ନୁହେଁ କି ? ବିଜ୍ଞାନ ଯଦି ବ୍ୟୋମଯାନ ଆବିଷ୍କାର କରି ନ ଥାନ୍ତା, ବୋମା ବାହାର କରି ନ ଥାନ୍ତା, ତାହାହେଲେ ଏସବୁ ଧ୍ୱଂସଲୀଳା କଅଣ ଘଟିଥାଆନ୍ତା ?

ପୂର୍ବକାଳରେ ଦୁର୍ଗ ତିଆରି ହେଉଥିଲା । ତାର ଚାରିପାଖରେ ବଡ଼ ବଡ଼ ମୋଟା କାନ୍ଥ ଦିଆଯାଉଥିଲା ଓ ଜଳପୂର୍ଣ୍ଣ ପରିଖା ତାହାକୁ ବେଷ୍ଟନ କରୁଥିଲା । ବାରବାଟୀ ଦୁର୍ଗର ଭଗ୍ନାବଶେଷ ତତ୍କାଳୀନ ଦୁର୍ଗନିର୍ମାଣ କୌଶଳ ସୂଚାଇଦିଏ । ଆଜିକାଲିର ବୈଜ୍ଞାନିକ ଯୁଗରେ ସେସବୁର ମୂଲ୍ୟ ନାହିଁ । ଜଳପୂର୍ଣ୍ଣ ଗଭୀର ପରିଖା, ପ୍ରସ୍ତର ବା ଇଷ୍ଟକନିର୍ମିତ ସୁଦୃଢ଼ ପ୍ରାଚୀର ଆଜି ପିଲାଖେଳ ପରି ମନେ ହୁଏ !

ଏହି ଯୁଦ୍ଧକାଳ ମଧ୍ୟରେ ଅନେକ ନୂତନ ଧରଣର ଭୀଷଣ ମାରଣାସ୍ତ୍ର ଉଦ୍ଭାବିତ ହୋଇଅଛି । ରକେଟ୍ ବୋମା, 'ଭି' ବୋମା ପ୍ରଭୃତି ଧ୍ୱଂସରାକ୍ଷସର ଜନ୍ମ ବୈଜ୍ଞାନିକମାନଙ୍କର ଗବେଷଣାଗୃହରେ । ସର୍ବଶେଷରେ ପରମାଣୁ ଓ ଉଦ୍‌ଜାନ ବୋମା । ଏହା ବିଜ୍ଞାନ-ଅବିଷ୍କୃତ ମାରଣାସ୍ତ୍ରମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ଭୟଙ୍କର ଓ ଧ୍ୱଂସକାରୀ । ଏହି ମାରଣାସ୍ତ୍ର ଅମ୍ଭମାନଙ୍କର କଳ୍ପନାରବାହାରେ । ଗୋଟିଏ ପରମାଣୁ ବୋମା ହଜାର ହଜାର ଲୋକଙ୍କୁ ଧୂଳି କରି ଦେଇ ପାରୁଅଛି ଏବଂ ଗୋଟିଏ ଉଦ୍‌ଜାନ ବୋମା



[ଗବେଷଣାଗୃହରେ ରକେଟ୍ ]

ଏକାଥରକେ ଲକ୍ଷ ଲକ୍ଷ ଲୋକଙ୍କୁ ନିଃଶେଷ କରିଦେଇ ପାରିବ । ଏହା ଯେଉଁଠାରେ ପଡ଼ିବ, ସେଠାରେ ଥିବା ସମସ୍ତ ବସ୍ତୁ ଓ ଜୀବଜନ୍ତୁ ପଲକ ମଧ୍ୟରେ ଧୂଳିକଣା ସଙ୍ଗରେ ମିଶିଯିବେ । ଅବଶ୍ୟ ବିଜ୍ଞାନଦ୍ୱାରା ହିଁ ଏ ସବୁ ମାରଣାସ୍ତ୍ରର ଉଦ୍ଭାବନ ସମ୍ଭବ ହୋଇଅଛି । ତେବେ କଅଣ ବିଜ୍ଞାନଶାସ୍ତ୍ର ଦୂଷଣୀୟ ? ଏସବୁରୁ ରକ୍ଷା ପାଇବା ପାଇଁ କଅଣ ବିଜ୍ଞାନକୁ ଏକାବେଳକେ ବର୍ଜନ କରିବାକୁ ହେବ ?

ଚିନ୍ତାକଲେ ମନେହୁଏ ଯେ, ପ୍ରକୃତରେ ବିଜ୍ଞାନର କିଛି ଦୋଷ ନାହିଁ । ବିଜ୍ଞାନକୁ ପରିତ୍ୟାଗ କଲେ ମାନବଜାତିର ଉନ୍ନତି ଅସମ୍ଭବ । ବିଜ୍ଞାନ ସଭ୍ୟତାର ମାପକାଠି ଓ ଜ୍ଞାନର ପରିମାପକ । ଧନ ଉପାର୍ଜ୍ଜନ କଲେ ଚୋର ନେଇଯିବ ବୋଲି କଅଣ ଧନ ଉପାର୍ଜ୍ଜନ କରିବା ଅନ୍ୟାୟ ? ଯେଉଁ ଗୋଖର ସାପର ବିଷ ଏତେ ମାରାତ୍ମକ, ତାହା ତ ପୁଣି ଔଷଧରୂପେ ବ୍ୟବହୃତ ହୋଇ ଲୋକଙ୍କୁ ମୃତ୍ୟୁ ମୁଖରୁ ଫେରାଇ ଆଣିପାରୁଛି ! ତେବେ ପ୍ରଶ୍ନ ହେଉଅଛି, ବିଜ୍ଞାନର ବ୍ୟବହାର କିପରି ହେବା ଉଚିତ ?

ବିଜ୍ଞାନ କଅଣ ? କୌଣସି ବିଷୟରେ ବିଶେଷ ଜ୍ଞାନ ଅର୍ଜ୍ଜନ କରିବାର ନାମ ବିଜ୍ଞାନ । ତେଣୁ ବିଜ୍ଞାନ ଭଲ ବା ମନ୍ଦ ହୋଇ ନ ପାରେ । ଏହାକୁ ଭଲଭାବରେ ବ୍ୟବହାର କରିପାରିଲେ ଏହାର ଫଳ ଭଲ ହେବ; ମାତ୍ର ଖରାପ ଭାବରେ ବ୍ୟବହାର କଲେ ଫଳ ବିଷମୟ ହେବ । ତେଣୁ ଏହାର ବ୍ୟବହାର ଉପରେ ଏହାର ଉତ୍କର୍ଷ ବା ଅପକର୍ଷ ନିର୍ଭର କରେ ।

ବୈଜ୍ଞାନିକମାନେ ସେମାନଙ୍କର ଅସାଧାରଣ ବୁଦ୍ଧିବଳରେ ଅଦ୍ଭୁତ ଆବିଷ୍କାରମାନ କରିପାରୁଛନ୍ତି ସତ୍ୟ, ମାତ୍ର ଜନସାଧାରଣ

ଓ ନେତାମାନଙ୍କର ଦୂରଦୃଷ୍ଟି ଉପରେ ତାହାର ଉପଯୁକ୍ତ ବ୍ୟବହାର ନିର୍ଭର କରୁଛି । ସେମାନେ ଯଦି ନାନା ସ୍ୱାର୍ଥପର କାର୍ଯ୍ୟରେ ଲଗିରହନ୍ତି ଏବଂ ବିଜ୍ଞାନର ସେ ସବୁ ଉଦ୍ଭାବନକୁ ନିଜ ନିଜ ସ୍ୱାର୍ଥ ସକାଶେ ବ୍ୟବହାର କରନ୍ତି, ତେବେ ବୈଜ୍ଞାନିକମାନଙ୍କୁ ଦୋଷ ଦେବା ଉଚିତ ହେବନାହିଁ । ତେଣୁ ଦେଶସେବକ ଓ ଶାସକମାନେ ସ୍ୱାର୍ଥରେ ବ୍ୟାପୃତ ନ ରହି ଯଦି ବିଶେଷ ଚିନ୍ତାଶୀଳ ଓ ଉଦାର ହେବେ, ଯଦି ସେମାନେ ପୃଥିବୀର ସମୂହକଲ୍ୟାଣ ଲାଗି ଚେଷ୍ଟା କରିବେ, ତେବେ ବୈଜ୍ଞାନିକ ଉଦ୍ଭାବନଗୁଡ଼ିକ କେବଳ କଲ୍ୟାଣସାଧନ ଉଦ୍ଦେଶ୍ୟରେ ବିନିଯୋଗ କରିହେବ । ଏଦ୍ୱାରା ମାନବ ସମାଜର ସାଧାରଣ ନୈତିକ ବଳର ବୃଦ୍ଧି ହେବ ଏବଂ ହିଂସା ପରିବର୍ତ୍ତନରେ ପରସ୍ପର ପ୍ରତି ସ୍ନେହ, କଳହ ପରିବର୍ତ୍ତେ ମୈତ୍ରୀଭାବ ପ୍ରତିଷ୍ଠିତ ହେବ । ତାହାହେଲେ ମନୁଷ୍ୟକୁ ଧ୍ୱଂସ କରିବା ସକାଶେ ମନୁଷ୍ୟ ଆଉ ମାରଣାସ୍ତ୍ର ଆବିଷ୍କାର କରିବ ନାହିଁ । ଯେଉଁ ପରମାଣୁ ଶକ୍ତି ମାରଣାସ୍ତ୍ର ରୂପରେ ଆଜି ମନୁଷ୍ୟ ମନରେ ଭୀତି ସଞ୍ଚାର କରିଛି ଓ ଜୀବଜଗତର ଅସ୍ତିତ୍ୱକୁ ଲୋପ କରିଦେବାକୁ ଉଦ୍ୟତ, ତାହା ସମଗ୍ର ମାନବ ସମାଜକୁ ସୁଖ ଓ ସମୃଦ୍ଧିର ଚରମ ସୋପାନରେ ଯେ ପହଞ୍ଚାଇ ଦେଇପାରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଏ ସୁବୁଦ୍ଧି ନ ହୋଇଛି ସେତେ ଦିନ ପର୍ଯ୍ୟନ୍ତ ମାନବସମାଜର ଉନ୍ନତି ଅସମ୍ଭବ ।

## ପ୍ରଶ୍ନ

୧ । ବିଜ୍ଞାନଦ୍ୱାରା ମନୁଷ୍ୟସମାଜର କି ଉପକାର ବା ଅପକାର ହୋଇଅଛି ଲେଖ ।

୨ । 'ବିଜ୍ଞାନ ସଭ୍ୟତାର ମାପକାଠି ଓ ଜ୍ଞାନର ପରିମାପକ'— ଏହାକୁ ସରଳ ଭାବରେ ବୁଝାଇଦିଅ ।

୩ । ବ୍ୟବହାର ଉପରେ ବିଜ୍ଞାନର ଉତ୍କର୍ଷ ବା ଅପକର୍ଷ ନିର୍ଭର କରେ ବୁଝାଇଦିଅ ।

୪ । ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର—
ମାରଣାସ୍ତ୍ର, ସର୍ବଗ୍ରାସୀ, ଅପକର୍ଷ, ତତ୍କାଳୀନ, ପୃଷ୍ଠଭୂ ।

୫ । ସମାସବ୍ୟାଖ୍ୟା କର—
ସର୍ବଗ୍ରାସୀ, ମାରଣାସ୍ତ୍ର, ଜୟଧ୍ୱଜା, ଦେଶସେବକ ।

---

## ହିମାଳୟ ଅଭିଯାନ

ଅଜ୍ଞାତକୁ ଜାଣିବାର, ଅଜେୟକୁ ଜୟ କରିବାର, ଅନଧିକୃତକୁ ଅଧିକାର କରିବାର ଓ ଅଲଙ୍ଘ୍ୟକୁ ଲଙ୍ଘନ କରିବାର ପିପାସା ମନୁଷ୍ୟର ଏକ ଆଦିମ ପ୍ରବୃତ୍ତି । ଏହି ପ୍ରବୃତ୍ତି ବଳରେ ସେ ଆଜି ଅସୀମ ଜ୍ଞାନଭଣ୍ଡାରର ଅଧିକାରୀ । ପ୍ରକୃତି ସହିତ ପ୍ରତି ମୁହୂର୍ତ୍ତରେ ସଂଗ୍ରାମ କରି ନିଜ ବିଜୟ ଗୌରବ ପ୍ରଚାର କରିବାକୁ ସେ ସର୍ବଦା ପ୍ରୟାସୀ । ପ୍ରକୃତି ସହିତ ସଂଗ୍ରାମ କରି ମନୁଷ୍ୟ ତାର ସଭ୍ୟତା ସୌଧ ନିର୍ମାଣ କରୁଅଛି । ଏହି ସଂଗ୍ରାମରେ ମନୁଷ୍ୟ ଯେପରି ପ୍ରକୃତିକୁ ପରାଜିତ କରିବାକୁ ଆଗ୍ରହୀ, ପ୍ରକୃତି ମଧ୍ୟ ସେହିପରି ମନୁଷ୍ୟର ଦାମ୍ଭିକତାକୁ ବାରମ୍ବାର ଉପହାସ କରିଆସିଛି । ଅନେକ ସମୟରେ ମନୁଷ୍ୟ ହୋଇଛି ପରାଜିତ; ତଥାପି ମନୁଷ୍ୟ ହାରିଯିବାର, ପଛଘୁଞ୍ଚା ଦେବାର ପାତ୍ର ନୁହେ ।

କଥାରେ ଅଛି—"ଅନ୍ଧ ଥରେ ବାଡ଼ି ହଜାଏ ।" ଜ୍ଞାନଲାଭ କରିବାକୁ ଯାଇ ବୁଦ୍ଧିମାନ୍ ମନୁଷ୍ୟ ପ୍ରଥମେ ପ୍ରକୃତରେ ଅନ୍ଧଭାବରେ ହୁଏତ ଭୁଲ୍ କରିପକାଏ; କିନ୍ତୁ ବାଡ଼ି ହଜାଇସାରି ଅନ୍ଧ ଯେପରି ଶିକ୍ଷାଲାଭ କରେ ଏବଂ ସାବଧାନ ହୁଏ, ସେହିପରି ଜ୍ଞାନକ୍ଷେତ୍ରରେ ମଧ୍ୟ ପ୍ରଥମେ ଭୁଲ୍ କରି ମନୁଷ୍ୟ ସାବଧାନ ହୁଏ ଏବଂ ନିଜକୁ ସଂଶୋଧନ କରି ଠିକ୍ ବାଟରେ ଯାଏ । ତେଣୁ ଜଣେ ପଣ୍ଡିତ କହିଥିଲେ ଯେ, ବିଫଳତା ହିଁ ପ୍ରକୃତରେ ସଫଳତାର ସୋପାନ । ଗୋଟିଏ ଗୋଟିଏ ପାହାଚ ଚଢ଼ି ମନୁଷ୍ୟ ଶେଷରେ ଦୋମହଲା କୋଠାଘରକୁ ଯାଏ । ସେହିପରି ଗୋଟାଏ ଗୋଟାଏ ଭୁଲରୁ ଶିଖି ଶିଖି ମନୁଷ୍ୟର ଜ୍ଞାନ ସମ୍ପୂର୍ଣ୍ଣ ହୁଏ । କେବଳ ଜଣେ ମନୁଷ୍ୟ ନୁହେଁ, ସାରା ମନୁଷ୍ୟଜାତି ଏହିପରି ଭୁଲରୁ ଶିଖି ଶିଖି ଏତେ ଜ୍ଞାନଲାଭ କରିବାକୁ ଆଜି ସମର୍ଥ ହୋଇଅଛି । ହିମାଳୟର ମୁଣ୍ଡ ଉପରେ ୧୯୫୩ ମସିହା ମଇ ମାସ ୨୯ ତାରିଖରେ ପ୍ରଥମେ ଯେତେବେଳେ ମନୁଷ୍ୟର ପାଦ ପଡ଼ିଲା, ସେତେବେଳେ ମଧ୍ୟ ଏହି ସତ୍ୟ ହିଁ ପ୍ରମାଣିତ ହେଲା ।

ଭାରତର ଉତ୍ତରରେ ଦୁର୍ଲଂଘ୍ୟ ପ୍ରାଚୀର ପରି ହିମାଳୟ ପର୍ବତଶ୍ରେଣୀ ଅବସ୍ଥିତ । ଏ ପର୍ବତଶ୍ରେଣୀ ହିମ ବା ବରଫର ଆଳୟ ହୋଇଥିବାରୁ ଏହାର ହିମାଳୟ ନାମ ସାର୍ଥକ ହୋଇଅଛି । ପାଦଦେଶରୁ ପ୍ରାୟ ୧୭୦୦୦ ଫୁଟ ଉଚ୍ଚ ପର୍ଯ୍ୟନ୍ତ ଗୁଡ଼ିଦେଲେ ଉପରକୁ ପ୍ରାୟ ୧୩୦୦୦ ଫୁଟ ଅର୍ଥାତ୍ ପ୍ରାୟ ଅଢ଼େଇମାଇଲ ଖାଲି ବରଫ । ବରଫ ଉପରୁ ପଡ଼େ, ବରଫ ଝଡ଼ ହୁଏ, ବରଫ ଖଣ୍ଡ ଖଣ୍ଡ ହୋଇ ଆସେ । ଗଛପତ୍ର ନାହିଁ, ଜୀବଜନ୍ତୁ ନାହାନ୍ତି, ଖାଲି ବରଫ । ମାଟି ଉପରୁ ସବୋଚ୍ଚ ଶୃଙ୍ଗ ଏଭରେଷ୍ଟର ଉଚ୍ଚତା ପ୍ରାୟ

୨୯୧୪୦ ଫୁଟ ଅର୍ଥାତ୍ ପ୍ରାୟ ସାଢ଼େ ପାଞ୍ଚ ମାଇଲ । ଏହା ହିଁ ପୃଥିବୀର ଉଚ୍ଚତମ ଗିରିଶୃଙ୍ଗ ।

ମନୁଷ୍ୟ ଏହାର ଉପରକୁ ଯିବାକୁ ଆଗ୍ରହୀ । ପୃଥିବୀର ସର୍ବୋଚ୍ଚ ସ୍ଥାନରେ ପାଦ ଦେବାର ଅଦମ୍ୟ ଅଭିଳାଷ ୧୯୧୧ ମସିହାରେ ପ୍ରଥମେ ତାର ଚିତ୍ତରେ ସୃଷ୍ଟି ହେଲା । ହିମାଳୟର ଶୀତ, ବରଫ, ଦୁଇ ମାଇଲ ଉପରେ ଯଥେଷ୍ଟ ବାୟୁର ଅଭାବ— ଏସବୁ ପ୍ରତିବନ୍ଧକ ଅଛି । ତା ସାଙ୍ଗକୁ ଅଛି ଝଡ଼, ଶୀତଜନିତ ରୋଗ, ବରଫ ଯୋଗୁଁ ଅନ୍ଧତା—ଏହିପରି ନାନା ବାଧା ଓ ବିପଦର ଭୟ । ପ୍ରତି ପଦରେ ମୃତ୍ୟୁ ଘଟିବାର ଆଶଙ୍କା, ତଥାପି ପ୍ରକୃତିକୁ ଜୟ କରିବାର ଦୁର୍ବାର ଲାଳସା ଘେନି ସାହସ ସହକାରେ ପ୍ରଥମ ଯାତ୍ରୀଦଳ ହିମାଳୟ ଆରୋହଣ କରିବାକୁ ଲାଗିଲେ । କିନ୍ତୁ ଏ ଅଭିଯାନରେ ମନୁଷ୍ୟ ସଫଳ ହୋଇପାରିଲା ନାହିଁ । ସେହିପରି ପୁଣି ୧୯୨୨, ୧୯୨୪, ୧୯୩୩, ୧୯୫୧ ଓ ୧୯୫୨ରେ ବିଭିନ୍ନ ପର୍ବତ-ଚଢ଼ାଳୀଦଳ ଏଭରେଷ୍ଟ ଶୃଙ୍ଗ ଉପରକୁ ଉଠିବାକୁ ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ । ସେମାନଙ୍କ ମଧ୍ୟରୁ କେତେକ ଫେରି ଆସିଥିଲେ ଏବଂ ଅପର କେତେକ ହିମାଳୟର ତୁଷାର ମଧ୍ୟରେ ମୃତ୍ୟୁବରଣ କରିଥିଲେ । ହିମାଳୟ ପୂର୍ବପରି ଅଜେୟ ହୋଇ ରହିଥିଲା; କିନ୍ତୁ ବିଭିନ୍ନ ଦଳର କାର୍ଯ୍ୟରେ କ୍ରମୋନ୍ନତି ଫଳରେ ୧୯୫୨ର ସ୍ୱିସ୍ ଦଳ ୨୮,୨୧୫ ଫୁଟ ଉପରକୁ ଉଠି ପାରିଥିଲେ । କ୍ରମେ କ୍ରମେ ଅଧିକ ଅଗ୍ରସର ହେଉଥିବାରୁ ମନୁଷ୍ୟର ସାହସ ଓ ଉତ୍ସାହ ମଧ୍ୟ ବୃଦ୍ଧି ପାଇବାକୁ ଲାଗିଲା ।

ଶେଷରେ ୧୯୫୩ ମାର୍ଚ୍ଚ ୧୦ ତାରିଖ ହନ୍ଟ ସପ୍ତମ ଆରୋହୀ ଦଳ କର୍ଣ୍ଣେଲ ହଣ୍ଟଙ୍କ ନେତୃତ୍ୱରେ ବାହାରିଲେ । ଏହି ଦଳରେ

ଥିଲେ ଭାରତର ଶେର୍ପା ତେନଜିଂ ନର୍କେ ଓ ଅଷ୍ଟ୍ରେଲିଆର ଏଡ୍‌ମଣ୍ଡ ହିଲାରି । ବହୁ ବିପଦ ମଧ୍ୟ ଦେଇ ଦଳ ଅଗ୍ରସର ହେଲା । ଆରୋହଣ



ହିଲାରି ଓ ତେନ୍‌ଜିଂ ।

କାଳରେ ମଧ୍ୟେ ମଧ୍ୟେ ତମ୍ବୁ ପକାଇ ଆଶ୍ରୟ ଓ ବିଶ୍ରାମ ନେବାକୁ ହୁଏ । ଏହିପରି ନବମ ତମ୍ବୁ ପର୍ଯ୍ୟନ୍ତ ସମସ୍ତେ ଉଠିଯିବା ପରେ ସେଠାରୁ ତେନ୍‌ଜିଂ ଓ ହିଲାରିଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଅଷ୍ଟମ ଶିବିରକୁ ଫେରିଗଲେ । ବରଫ ଯୋଗୁଁ ଏଭରେଷ୍ଟର ମୁଣ୍ଡ ଉପରେ ସର୍ବଦା କୁହୁଡ଼ି ଘେରି ରହିଥାଏ । ତେନ୍‌ଜିଂ ଓ ହିଲାରିଙ୍କ ସୌଭାଗ୍ୟ

କ୍ରମେ ହଠାତ୍ ପାଗ ଭଲ ହୋଇଗଲା ଏବଂ ସେମାନେ ସାହସ ସହକାରେ ଶୃଙ୍ଗ ଉପରକୁ ଉଠିଲେ । ତେନ୍‌ଜିଂ ସେହି ଉଚ୍ଚତମ ଗିରିଶିଖରର ଶିରୋଦେଶରେ ଭାରତ, ନେପାଳ, ଇଂଲଣ୍ଡ ଏବଂ ରାଷ୍ଟ୍ରସଂଘର ପତାକା ଉଡ଼ାଇ ଫେରିଆସିଲେ । ଏତେ ଦିନ ପରେ ମନୁଷ୍ୟର ଚେଷ୍ଟା ସଫଳ ହେଲା । ମନୁଷ୍ୟ ଜାତିକୁ ଏହି ଅପୂର୍ବ ବିଜୟ ଆଣି ଦେଇଥିବାରୁ ପୃଥିବୀର ସବୁ ଦେଶ ତେନ୍‌ଜିଂ ଓ ହିଲାରୀଙ୍କୁ ଯଥେଷ୍ଟ ସମ୍ମାନ ଦେଇଅଛନ୍ତି ।

## ପ୍ରଶ୍ନ

୧ । "ଅନ୍ଧ ଥରେ ବାଡ଼ି ହଜାଏ", "ବିଫଳତା ହିଁ ପ୍ରକୃତରେ ସଫଳତାର ସୋପାନ"— ଏହି ଉକ୍ତିଗୁଡ଼ିକର ସରଳାର୍ଥ କହ ।

୨ । ଉଚ୍ଚ ପର୍ବତ-ଆରୋହଣକାରୀମାନେ କି କି ବିପଦର ସମ୍ମୁଖୀନ ହୁଅନ୍ତି ?

୩ । ହିମାଳୟ-ଆରୋହଣକାରୀ ସପ୍ତମ ଦଳର ଅଭିଯାନ ବର୍ଣ୍ଣନ କର ।

୪ । ବିପରୀତ ଶବ୍ଦ ଲେଖ—
ଅଜ୍ଞାତ, ଅକୃତକାର୍ଯ୍ୟ, ଉଚ୍ଚତମ, ସାବଧାନ, ଆରୋହଣ ।

୫ । ସନ୍ଧିବିଚ୍ଛେଦ କର—
ହିମାଳୟ, ହିମୋନ୍ମତ୍ତ, ସର୍ବୋଚ୍ଚ, ବରଫାବୃତ ।

୬ । ସମାସ ବ୍ୟାଖ୍ୟା ଲେଖ—
ସଭ୍ୟତାସୌଧ, ବିଜୟଗୌରବ, ବରଫାବୃତ, ହିମାଳୟ ।

---

# ମାଂସାଶୀ ଉଦ୍ଭିଦ

ଉଦ୍ଭିଦମାନେ ସାଧାରଣତଃ ଚେର ସାହାଯ୍ୟରେ ମୃତ୍ତିକାରୁ ଜଳ ସମ୍ବଳିତ ଦ୍ରବୀଭୂତ ଖାଦ୍ୟ ସଂଗ୍ରହ କରନ୍ତି । କିନ୍ତୁ ଏପରି କେତେକ ଉଦ୍ଭିଦ ଅଛନ୍ତି, ଯେଉଁମାନେ ଚେରଦ୍ୱାରା ଖାଦ୍ୟ ସଂଗ୍ରହ କଲେ ମଧ୍ୟ କୀଟପତଙ୍ଗାଦି କ୍ଷୁଦ୍ର ପ୍ରାଣୀମାନଙ୍କୁ ଖାଦ୍ୟରୂପେ ଭକ୍ଷଣ କରନ୍ତି । ଅନ୍ୟ କେତେକ ପ୍ରକାର ଉଦ୍ଭିଦ ଅଛନ୍ତି, ଯେଉଁମାନେ କୌଣସି କୌଣସି ଉଦ୍ଭିଦ ଓ ପ୍ରାଣୀଙ୍କ ଶରୀରର ରସ ଖାଇ ଜୀବନଧାରଣ କରନ୍ତି । ଏଭଳି ଉଦ୍ଭିଦମାନଙ୍କୁ ପରାଙ୍ଗପୁଷ୍ଟ ଉଦ୍ଭିଦ ବୋଲାଯାଏ । ଏହି ଉଭୟବିଧ ଉଦ୍ଭିଦଙ୍କର ସାଧାରଣ ନାମ ମାଂସାଶୀ ଉଦ୍ଭିଦ ।

ଅତୀବ ଆଶ୍ଚର୍ଯ୍ୟର ବିଷୟ ଯେ, ଏକପ୍ରକାର ଉଦ୍ଭିଦ ବଡ଼ ବଡ଼ ବନ୍ୟ ଜୀବ ଏବଂ ହାବୁଡ଼ରେ ପଡ଼ିଲେ ମନୁଷ୍ୟକୁ ମଧ୍ୟ ଖାଦ୍ୟରୂପେ ବ୍ୟବହାର କରନ୍ତି । ଏହି ବୃକ୍ଷର ବୈଜ୍ଞାନିକ ନାମ 'ଅକ୍ଟୋପସ୍' । ସମୁଦ୍ରରେ 'ଅକ୍ଟୋପାସ୍' ନାମରେ ଗୋଟିଏ ଅଷ୍ଟପଦ ପ୍ରାଣୀ ଅଛି । ଆଠଟି ଲମ୍ବ ବାହୁ ସାହାଯ୍ୟରେ ଏମାନେ ବଡ଼ ବଡ଼ ଜୀବଙ୍କୁ ଧରି ଖାଇଯାଆନ୍ତି । ଜଳଜ ଜୀବମାନଙ୍କର ଭୟପ୍ରଦ ଏହି ପ୍ରାଣୀର ନାମ ଅନୁସାରେ ଉକ୍ତ ପଶୁଖାଦକ ବୃକ୍ଷର ନାମକରଣ ହୋଇଅଛି । ଏସବୁ ବୃକ୍ଷ ଦକ୍ଷିଣ-ଆମେରିକାର ଆମେଜନ୍ ନଦୀ ତୀରବର୍ତ୍ତୀ ନିବିଡ଼ ଅରଣ୍ୟରେ ଦେଖାଯାନ୍ତି । ବୃକ୍ଷଟିର କେତେକ ପତ୍ରହୀନ ଶାଖା ଭୂମି ଉପରେ ଘାସ, ଗଛପତ୍ର ଭିତରେ ବିସ୍ତୃତ ହୋଇ ପଡ଼ିଥାଏ । କୌଣସି ପ୍ରାଣୀ ଅତର୍କିତ ଭାବରେ ସେମାନଙ୍କ ଉପରେ ଚଲାବୁଲା କଲେ ଏହି ଶାଖାଗୁଡ଼ିକ ସେହି ଜୀବଦେହରେ ଦଉଡ଼ିପରି ଗୁଡ଼ାଇ ହୋଇଯାନ୍ତି । ତତ୍ପରେ ସେହି ଶାଖାମାନେ ରଜ୍ଜୁବଦ୍ଧ ପ୍ରାଣୀଟିକୁ ବୃକ୍ଷ ଉପରକୁ ଟେକିନିଅନ୍ତି । ଅନାହାରରେ ପ୍ରାଣୀର

ମୃତ୍ୟୁ ହେଲେ ତାହାର ଶରୀରର ରସକୁ ସ୍ୱତନ୍ତ୍ର ଉଦ୍ଭିଦ ଶୋଷଣ କରେ ।

ଆମ ଦେଶରେ ଏବଂ ଅନ୍ୟ ଦେଶମାନଙ୍କରେ କେତେକ ଉଦ୍ଭିଦ ଅଛନ୍ତି, ଯେଉଁମାନଙ୍କର ରଙ୍ଗଯୁକ୍ତ ପତ୍ର ପ୍ରତି ଆକୃଷ୍ଟ ହୋଇ କୀଟମାନେ ତା ଉପରେ ବସିଲେ ଆଉ ଖସି ଯାଇପାରନ୍ତି ନାହିଁ; କାର୍ଯ୍ୟତଃ ଉଦ୍ଭିଦର ଖାଦ୍ୟରେ ପରିଣତ ହୁଅନ୍ତି ।

କୀଟମାରୀ ବୋଲି ଏକଜାତୀୟ ଗଛ ଅଛି । ଏହା ଇଂରାଜୀରେ 'ଡ୍ରସେରା' ନାମରେ ଅଭିହିତ । ଅନୁର୍ବର ବାଲିଆ ଜମିରେ ଏହି କ୍ଷୁଦ୍ର ଉଦ୍ଭିଦଟି ଜନ୍ମେ । ଏହାକୁ ଦୂରରୁ ଦେଖିଲେ ମନେହୁଏ, ସତେ ଯେପରି କେହି ପାନ ଖାଇ ପିକ ପକାଇ ଦେଇଛି । ଶୀତଦିନରେ ଏ ଗଛ ବହୁତ ଦେଖାଯାଏ; ତେଣୁ କେହି କେହି ଏହାକୁ କାକରଆ କୀଟମାରୀ ବୋଲି କହନ୍ତି । ଏହି ଗଛର ଭୂମିସଂଲଗ୍ନ ଅଂଶରେ ବୃତ୍ତାକାରରେ ଗୁଡ଼ିଏ ଛୋଟ ଛୋଟ ପତ୍ର ସଜ୍ଜିତ ଥାଏ ଏବଂ ମଧ୍ୟସ୍ଥଳରୁ ଏକ ବା ଏକାଧିକ ପୁଷ୍ପଦଣ୍ଡ ବାହାରିଥାଏ । ଏହି ପୁଷ୍ପଦଣ୍ଡମାନଙ୍କ ଅଗ୍ରଭାଗରେ କେତେଗୁଡ଼ିଏ ଲୋହିତ ବର୍ଣ୍ଣର ଫୁଲ ଫୁଟେ । ପତ୍ରଗୁଡ଼ିକର ଉପରେ ତଥା ପ୍ରାନ୍ତଭାଗରେ ଅନେକଗୁଡ଼ିଏ ଲୋମ ଥାଏ । ତହିଁରୁ ଏକପ୍ରକାର ଅଠାଳିଆ ମିଷ୍ଟରସ ନିର୍ଗତ ହୁଏ । ପୁଷ୍ପର ବର୍ଣ୍ଣରେ ଆକୃଷ୍ଟ ହୋଇ



[ କୀଟମାରୀ ଗଛ ]

କୌଣସି କୀଟ ତା ଉପରେ ବସିଲେ ଅଠାରେ ଲାଖିଯାଏ; ଆଉ ଉଡ଼ି ଯାଇପାରେ ନାହିଁ । ଆଖପାଖର ଲୋମଗୁଡ଼ିକ କୀଟ ଉପରକୁ ଢଳିପଡ଼ନ୍ତି; ଫଳତଃ କୀଟଟି ବନ୍ଦୀହୋଇ ରହେ । ଅଠାରସର ପ୍ରତିକ୍ରିୟା ଫଳରେ ଏହା ଉଦ୍ଭିଦର ଖାଦ୍ୟରେ ପରିଣତ ହୁଏ ।

ଉତ୍ତର-ଆମେରିକାରେ "ଭେନାସ୍‌ଙ୍କ ମାଛିଧରା ଯନ୍ତା" ନାମରେ ଗୋଟିଏ କୀଟଖାଦକ ଗଛ ଦେଖାଯାଏ । ଏହାର ପତ୍ରର ଆକୃତି ମୂଷାଧରା ଯନ୍ତା ପରି । ପତ୍ରଗୁଡ଼ିକ ଦୁଫାଳିଆ ଏବଂ ସେସବୁର ପ୍ରାନ୍ତଭାଗରେ କଣ୍ଟାଭଳି ଲୋମଥାଏ । ପ୍ରତି ପତ୍ରରେ ଛଅଟି ଲେଖାଏଁ ଲୋମ, ତନ୍ମଧ୍ୟରୁ କୌଣସି ଗୋଟିଏ ଲୋମ କୀଟ ସ୍ପର୍ଶ କଲାମାତ୍ରେ ପତ୍ରର ଫାଳ ଦୁଇଟି ବୁଜି ହୋଇଯାଏ ଏବଂ କୀଟଟି ପତ୍ରରୁ ନିଃସୃତ ରସଦ୍ୱାରା ଦ୍ରବୀଭୂତ ହୋଇ ଶୋଷିତ ହୁଏ ।

ପୂର୍ବଭାରତୀୟ ଦ୍ୱୀପପୁଞ୍ଜରେ 'କମଣ୍ଡଳୁ ଗଛ' ନାମରେ ଏକ ଜାତୀୟ ଗଛ ଦେଖାଯାଏ । ଏହାର ପତ୍ରର ଉପରଭାଗ ପକ୍ଷ ଆକୃତି-ବିଶିଷ୍ଟ ଓ ନିମ୍ନଭାଗ କମଣ୍ଡଳୁ ସଦୃଶ୍ୟ । କମଣ୍ଡଳୁ ଉପରେ ଢାଙ୍କୁଣି ପରି ଗୋଟିଏ ଆବରଣ ଥାଏ । କମଣ୍ଡଳୁ ନାନା ବର୍ଣ୍ଣରେ ରଞ୍ଜିତ ଏବଂ ତନ୍ମଧ୍ୟରେ ମିଷ୍ଟରସ ସଞ୍ଚିତ ଥାଏ । କୀଟମାନେ ଏହି ରସପାନ କରିବା ଆଶାରେ କମଣ୍ଡଳୁରେ ପ୍ରବେଶ କଲେ ରସରେ ନିମଜ୍ଜିତ ହୋଇ ଗଛର ଆହାର ହୁଅନ୍ତି ।



[ କମଣ୍ଡଳୁ ଗଛ ]

ବାଇଗବା ଗଛର କାଣ୍ଡ ଓ ପତ୍ରବୃନ୍ତରେ ମୁଦ୍‌ଗର ଆକାରର ଲୋମ ଦେଖାଯାଏ ଏବଂ ତହିଁରୁ ଏକ ପ୍ରକାର ଅଠା ନିର୍ଗତ ହୁଏ । ଧୂଆଁପତ୍ର ଲୋମଶ ଏବଂ ତହିଁରୁ ମଧ୍ୟ ଏକ ପ୍ରକାର ଅଠାଳିଆ ରସ ବାହାରେ । ଏସବୁରେ ଯେଉଁ ସମସ୍ତ କ୍ଷୁଦ୍ର କ୍ଷୁଦ୍ର କୀଟ ଲାଗିଯାଆନ୍ତି, ସେଗୁଡ଼ିକ ଗଛର ଖାଦ୍ୟରେ ପରିଣତ ହୁଅନ୍ତି ।

କେତେ ପ୍ରକାର ଜଳଜ ଉଦ୍ଭିଦ ମଧ୍ୟ ଏହିପରି କୀଟପତଙ୍ଗ ଜୀର୍ଣ୍ଣ କରନ୍ତି । ଏକ ପ୍ରକାର ଜଳଜ ଉଦ୍ଭିଦର ପତ୍ରର ପ୍ରାନ୍ତଭାଗରେ ଗୋଟିଏ ଗୋଟିଏ ଥଳି ଅଛି । ଥଳି ମୁହଁରେ ଗୋଟିଏ ଗୋଟିଏ କବାଟି ଥାଏ । ଏହି କବାଟି ଏପରି ଭାବରେ ଗଠିତ ଯେ ବାହାର ପାଖରୁ ଠେଲିଲେ ଭିତର ଆଡ଼କୁ ଫିଟିଯାଏ; କିନ୍ତୁ ଭିତରଆଡ଼ୁ ଠେଲିଲେ ଫିଟେ ନାହିଁ । ପତଙ୍ଗାଦି କବାଟିକୁ ଠେଲି ଭିତରକୁ ପଶିଯାଆନ୍ତି; କିନ୍ତୁ ଭିତର ଆଡ଼ୁ କବାଟିକୁ ଠେଲି ବାହାର ଆସିପାରନ୍ତି ନାହିଁ । ସେଠାରେ ସେମାନେ ଉଦ୍ଭିଦର ଖାଦ୍ୟରେ ପରିଣତ ହୁଅନ୍ତି ।



[ ଜଳଜ ଉଦ୍ଭିଦ ]

## ପ୍ରଶ୍ନ

୧ । କେତେଗୋଟି ପରାଙ୍ଗପୁଷ୍ଟ ଉଦ୍ଭିଦର ନାମ କହ । କାହିଁକି ସେମାନଙ୍କର ଏପରି ନାମକରଣ ହୋଇଅଛି ?

୨ । ବିପରୀତ ଶବ୍ଦ ଲେଖ—
ମାଂସାଶୀ, ବୈଜ୍ଞାନିକ, କ୍ଷୁଦ୍ର, ଖାଦ୍ୟ, ପୁଷ୍ଟ, ବଦ୍ଧ ।

୩ । ସମାସ ବ୍ୟାଖ୍ୟା ଲେଖ—
ଉଦ୍ଭିଦ, ପତ୍ରବୃନ୍ତ, ମାଂସାଶୀ, ପରାଙ୍ଗପୁଷ୍ଟ ।

# ମୃଗୁଣୀ ସ୍ତୁତି

ଦେଖ ଘଟଣା ଦଇବ ଯୋଗର
ବ୍ୟାଧ ଶର ଧରି ବଣେ ଆଗର
ପୃଷ୍ଠଭାଗେ ବନ ଦହେ ଅନଳ
ପାଶେ ମିଳି ଅଛଇ ଶ୍ୱାନମେଳ
ଏଣୀ ଗର୍ଭବତୀ
ତେଣୁ ବ୍ୟଥାରେ ଅଳସରେ ଗତି । ୧ ।
ସଙ୍ଗେ ଅଛନ୍ତି ମୃଗଶିଶୁ ପଂକ୍ତି
ଯହିଁ ସ୍ନେହ ବଢ଼ଇ ପ୍ରାଣୁ ଅତି
କସ କରିବ କେଉଁ ଦିଗେ ଯିବ
କେଉଁ ଉପାୟେ ଅପାୟୁଁ ତରିବ
ଏମନ୍ତ ବୋଲିଣ,
ଚିନ୍ତାକୁଳ ହୋଇ କଲା ରୋଦନ । ୨ ।
ଭୟକାତର ମନରେ ମୃଗୁଣୀ
ଚିନ୍ତାକଲା ଗୋବିନ୍ଦ ଗୁଣ ଗୁଣି
ଆହେ ପ୍ରଭୁ ଜଗତ-ଜନ-ବନ୍ଧୁ,
ଦୀନ ଉଦ୍ଧାରଣ କରୁଣା ସିନ୍ଧୁ,
ତୁମ୍ଭେ ଦୁଃଖସିନ୍ଧୁ
କରୁଣା କଲେ ତରିପାରି ବନ୍ଧୁ । ୩ ।

ପୂର୍ବେ ନକ୍ର ଧଇଲା ଗଜେନ୍ଦ୍ରକୁ
ଆର୍ତ୍ତସ୍ୱରେ ସେ ଡ଼ାକଲା ତୁମ୍ଭକୁ
ଢ଼େର ଶ୍ରବଣ ତାହାରେ ଶୁଣିଲ
ଚକ୍ର ପେଷିଣ ନକ୍ରେ ବନ୍ଧ କଲ
ଉଦ୍ଧାର ଗଜକୁ
ଦେଲ ଦୁଇ ଜଣେ ଦ୍ୱାସ୍ଥ ପଦକୁ । ୪ ।
ମୁଁ ଯେ ସ୍ତ୍ରୀ ଜାତ ବ୍ୟୋମ ଜ୍ଞାନନା
କରିବାରେ ଅଟେ ଶକ୍ତିହୀନା
ତେଣୁ ତୁମ୍ଭ ପାଦ ପଦ୍ମେ ଶରଣ
ଯାଉଅଛଇ ଆହେ ନାରାୟଣ
ରଖ ବା ନ ରଖ,
ଆଉ ଆଶ୍ରୟ ନାହିଁ କଞ୍ଜମୁଖ । ୫ ।
ଏମନ୍ତେ ଏଣୀସ୍ତ୍ରୀ କଷ୍ଟେ ଶୁଣି
ଆଜ୍ଞା ଦେଲେ ବାସବେ ଚକ୍ରପାଣି
ତୁମ୍ଭେ ମେଘ ପେଷି ମୃଗୀ ରଖିବ
ବ୍ୟାଧ ପ୍ରଭୃତିଙ୍କି ତହିଁ ନାଶିବ
ଇନ୍ଦ୍ର ଏହା ଶୁଣି
ମେଘେ ଆଦେଶିଲା ଯାଇ ତକ୍ଷଣି । ୬ ।
ଆଜ୍ଞା ପାଇ ସେ କଲା ଘୋର ଧ୍ୱନି
କମ୍ପେ ଚରାଚର ସଙ୍ଗେ ମେଦିନୀ
ଜଳ ବର୍ଷିଲା ମୂଷଳ ଧାରରେ
ଅଗ୍ନି ଲିଭିଗଲା ଅବିଳମ୍ବରେ
ବାଟେ ଜାଲମାଳା
ଛୁଟିଲା, ସର୍ପାଘାତେ ବ୍ୟାଧ ମଲା । ୭ ।

ଶ୍ୱାନ ଉପରେ ବଜ୍ରପାତ ହେଲା
ତେଣୁ ମୃଗୀ ତହୁଁ ଭୟୁ ଛାଡ଼ିଲା
ଧୀରେ ଧୀରେ କରଇ ଗୃହ ଗତି
ସଙ୍ଗେ ନିଜ ଶିଶୁମାନେ ଅଛନ୍ତି
ସାଧୁରେ ବିଧାତା,
ତୋର ଅଟଇ ବିଚିତ୍ର କ୍ଷମତା । ୮ ।

## ପ୍ରଶ୍ନ

୧ । ମୃଗୁଣୀ କିପରି ବିପନ୍ନ ଅବସ୍ଥାରୁ ଉଦ୍ଧାର ପାଇଲା ଲେଖ ।

୨ । ବୁଝାଇ ଦିଅ —
ପୂର୍ବେ ନନ୍ଦ ଧଇଲା······ହାସ୍ୟ ସଜଲୁ ।

୩ । ସମାସବ୍ୟାଖ୍ୟା କରି ସମାସର ନାମ ଲେଖ—
ଚକ୍ରପାଣି, କଞ୍ଜମୁଖ, ଅଜର, ଭବସାଗର, ପାଦପଦ୍ମ ।

୪ । ବିପରୀତ ଲିଙ୍ଗରେ କଅଣ ହେବ ଲେଖ—
ମୃଗୁଣୀ, ଶ୍ୱାନ, ଏଣୀ, ଇନ୍ଦ୍ର, ଠାକୁର ।

---

# ହନୁମାନର ସୀତାଠାବ

ଶିଂଶପା ବୃକ୍ଷର ଡାଳେ ହନୁ ମନେ ମନେ ଭାଳେ
ନିଷ୍ଟପ୍ତେ ଜାନକୀ ଜନକନନ୍ଦିନୀ ଦେଖିଲଇଁ ବେନନେତ୍ରୋଳେ
ନିଜ ଭାଗ୍ୟ ବଳେ ।

ଶୁଖିଛି ଚନ୍ଦ୍ର ବଦନ ନିରତେ ନୀରଲୋଚନ
ତେବେହେଁ ଶୋଭାକୁ ଉପମା ଦେବାକୁ ନାହିଁ ନା ତ୍ରିଭୁବନ
ନାରୀରତନ ।

ବନ୍ଦନା କର ଏବେ ପୁଣି ଶ୍ରୀରାମଚନ୍ଦ୍ର ଘରଣୀ,
ଅସୁରପୁରରେ ଅସୁଖ ଜଗିଛନ୍ତି ଜଗତର ଠାକୁରାଣୀ
ରମଣୀମଣି ।

ଜହ୍ନନ୍ତେ ବଂଶାନୁଗୁଣ, ଭେଦନ୍ତେ ସପ୍ତାଶ୍ରବଣ;
ତରୁକୁ ଗୁହିଁଲେ ମର୍କଟ ଗୋଟିଏ ଜହ୍ନେ ରାମ କାରିଗୁଣ,
ସେ ପୁଣ ପୁଣ ।

କପି ତୁ କାହୁଁ ଅଇଲୁ ? ଶ୍ରୀରାମ ନାମ ଧଇଲୁ ,
ମୋ ହୃଦୟ-ବନ ଦହନ କାଳରେ ଚନ୍ଦନ ଲେପନ କଲୁ
ଯାହା ବୋଇଲୁ ।

ହନୁ ବୋଲନ୍ତ ଗୋ ମାତ, ଶ୍ରୀରାମଚନ୍ଦ୍ରଙ୍କ ଦୂତ,
ଏମନ୍ତ କହିଣ ଚରଣ ତଳରେ ପଡ଼ିଲା ଯାଇ ତୁରିତ
ସେ ରାମଦୂତ ।

ଶ୍ରୀରାମ ମୁଦ୍ରିକା ଦେଲେ, ସଙ୍କେତମାନ କହିଲେ,
ତୁମ୍ଭଙ୍କୁ ପୃଥିବୀଯାକ ଖୋଜୁଅଛୁ ଅଞ୍ଜନାସୁତ କହିଲେ
ପ୍ରତୀତି ଗଲେ ।

ରାମ କଲେ ବାଳି ହତ; ସୁଗ୍ରୀବଙ୍କୁ କଲେ ମିତ,
କୋଟି କୋଟି କପି ମୋହର ସମାନେ ହୋଇଛୁ ପ୍ରଭୁଙ୍କ ଭୃତ୍ୟ,
କହିଲି ସତ ।

ସମୁଦ୍ର ଡେଇଁ ଅଇଲି, ଲଙ୍କା ଗଡ଼ରେ ପଶିଲି,
ତୁମ୍ଭ ଶ୍ରୀଚରଣ ଦର୍ଶନ ନ ପାଇ ପ୍ରାଣ ମୁଁ ହରଉଥିଲି,
ଭଲ ଦେଖିଲି ।

ରାମ ମାଲ୍ୟବନ୍ତ ଗିରି ଶିବେଛନ୍ତି ବଳେ କରି,
ସୁଗ୍ରୀବ ସହିତେ ଅନେକ ମର୍କଟ ବନଗିରିଛନ୍ତି ପୂରି
ସେ ଋଷ ହରି ।

ଆସ ସ୍ୱଦେ ମୋର ବସ ଯେଉଁନିବ ରାମ ପାଶ
ରାବଣ ସହିତେ ମାରନ୍ତୁ, ପ୍ରଭୁଙ୍କ ପ୍ରତିଜ୍ଞା ହୋଇବ ନାଶ,
ଦେଖ ସାହସ ।

ଶୁଣିଣ ଦେବୀ ହରଷ; ହନୁକୁ ବସାଇ ପାଶ,
ବୋଲନ୍ତି ବାଣୀ, ବିଶ୍ୱାସ କଥା ଶୁଣି ସଂଶୟ ହେଲା ବିନାଶ ।
ଏ ରାମ ରସ ।

## ପ୍ରଶ୍ନ

୧ । ସୀତାଙ୍କ ନିକଟରେ ହନୁମାନ କଅଣ କଅଣ କହିଥିଲେ ?

୨ । ସମାସ ବ୍ୟାଖ୍ୟା କର—
ନୀରଲୋଚନ, ହୃଦୟ-କଜ, ଅଞ୍ଜନା ସୁତ, ତ୍ରିଭୁବନ ।

୩ । ବାକ୍ୟରେ ବ୍ୟବହାର କର—
ପ୍ରଣତି, ସଂଶୟ ସଙ୍କେତ, ବଂଶାନୁଗୁଣ ।

---

# ନର ଓ ମୟୂର

ହସ୍ତୀର ଉପରେ ବସିଥିଲେ ନରବର
ଚାମରସ୍ୱ ପଟିଛଦେ ମଣ୍ଡି କଳେବର ।
ଶିଖର-ଶିଖରେ ରତ୍ନ ଶିଖୀ ତାହା ଗୃହିଁ
ସହି ନ ପାରିଲା ତାଙ୍କ କୃତ୍ରିମ ବଡ଼ାଇ
କେକାରବେ ଡାକଦେଲା ବିସ୍ତାରି ସ୍ୱପୁଚ୍ଛ,
ନୁହ ନୃପ ମୋ ସମାନ ରମ୍ୟ ଅବା ଉଚ୍ଚ ।
ଦେଖ ମୋତେ, ମୋହଠାରୁ ଅଟ କେତେ ଖର୍ବ
କି ଯେଉଁ ନିଜକୁ ଉଚ୍ଚ ମଣି କର ଗର୍ବ ?
ମୋର ପୁଚ୍ଛ ସଙ୍ଗେ ଯେବେ କରିବ ତୁଳନା
ନିଶ୍ଚୟ ମଣିବ ନିଜ ବେଶକୁ ଅଲଣା ।

ତୁମ୍ଭେ ବା କୋଳବ ଅଛୁ ମାନବର ଜ୍ଞାନ
ପକ୍ଷୀଜାତି ହେବ କାହିଁ ମାନବ ସମାନ ?
ଭେକର ବକଟ ରବେ ନ ଥାଏ ମୋ କର୍ଣ୍ଣ,
ନାଚୁଥାଏ ଊର୍ଦ୍ଧ୍ୱେ ଶୁଣି ଜଳଦ ଗର୍ଜନ ।
ମାଚର କୁବାଣୀ ସହ୍ବ ଊଚର ଭର୍ତ୍ସନା
ହ୍ବତ ମଣି କର କ ହେ ଊଚର ଅର୍ଚ୍ଚନା ?
ଭୟଙ୍କର ବଷଧର କରେ ଗର୍ଭସାତ,
ନାଶ କ ଜଘାସା ହେଲେ ତୁମ୍ଭ ହୃଦେ ଜାତ ?
ଇନ୍ଦ୍ରଧନୁ ଦରଶନେ ବଢ଼େ ମୋ ଆନନ୍ଦ,
ପରଶିଗ୍ ହୁଅଇ କ ତୁମ୍ଭ ପ୍ରୀତିପ୍ରଦ ?
ପଙ୍କତେ ମୋ ଯେଉଁ ସୁଖ ସେ ସୁଖ ଭୂମିରେ,
ସମସୁଖୀ ଥାଅ କ ହେ ପ୍ରାସାଦେ କୁଟୀରେ ?

## ପ୍ରଶ୍ନ

୧ । ମୟୂର ନକଟରୁ ନର କେଉଁ କେଉଁ ଗୁଣ ଶିକ୍ଷା କରବା ଆବଶ୍ୟକ ?

୨ । ସରଳାର୍ଥ ଲେଖ—

(କ) ମାଚର କୁବାଣୀ······ଅର୍ଚ୍ଚନା ?

(ଖ) ଭୟଙ୍କର ବଷଧର······ତୁମ୍ଭ ହୃଦେ ଜାତ ?

(ଗ) ପଙ୍କତେ ମୋ ଯେଉଁ ସୁଖ······ପ୍ରାସାଦେ କୁଟୀରେ ?

୩ । ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର—

ଜଘାସା, ପ୍ରାସାଦ, ଅଳଣା, ଖଙ୍ଗ, କୃତ୍ରିମ ।

୪ । ବପରୀତ ଶବ୍ଦ ଲେଖ—

ଊର୍ଦ୍ଧ୍ୱ, କୃତ୍ରିମ, ଖଙ୍ଗ, ଭର୍ତ୍ସନା, କୁବାଣୀ ।

---

# ଇନ୍ଦ୍ରଧନୁ

କେ ସୃଜିଲା ଏ ଧନୁକୁ ବିଶ୍ୱମନୋହାରୀ,
ସୁଷମା-ପୀୟୂଷପୂର୍ଣ୍ଣ ରୂପ-ଗଙ୍ଗାଧାରୀ ।
ଆଶାଗର୍ଭେ ସାଫଲ୍ୟର ଶୁଭଚନ୍ଦ୍ର ପ୍ରାୟ
ଆଭାସୁଛି, କିନ୍ତୁ କ୍ଷଣେ ଲିଭିଯିବ ହାୟ !
କି ସୁନ୍ଦର ଝଲମଲ ବଙ୍କିମ ବିଶାଳ,
ଦିଗବାଳା ବକ୍ଷେ କି ସେ ବନଫୁଲମାଳ ।
ରଖିଛି ବିବିଧ ଭାବ କରି ଆବରଣ,
ଭାବଦାତା ରୂପେ କରେ ଭାବ ବିତରଣ ।
ଅଜ୍ଞାତର ମହାସତ୍ୟ ଅରୂପ ଅକ୍ଷରେ,
ରହିଛି ଅଙ୍କିତ ତାର ଭାସ୍ୱର ବକ୍ଷରେ ।
ଅଜ୍ଞାତକୁ ଉଦ୍‌ବୋଧନ କରାଇଁ ସେ ଲିଭେ
ବୁଡ଼ିଯାଏ ପୁଣି ସେହି ଅଜ୍ଞାତ ଗରଭେ ।
ସ୍ୱଳ୍ପାୟୁ ସେ, ମାତ୍ର ତାର ସ୍ମୃତି ଅନଶ୍ୱର,
ଅମର ଯାହାର ସ୍ମୃତି ସେହି ତ ଅମର ।

## ପ୍ରଶ୍ନ

୧ । 'ଇନ୍ଦ୍ରଧନୁ' କବିତାଟିର ସାରାଂଶ ବୁଝାଇ ଦିଅ ।

୨ । ସରଳାର୍ଥ ଲେଖ—

ସ୍ୱଳ୍ପାୟୁ ସେ......ସେହି ତ ଅମର ।

୩ । ବିପରୀତ ଶବ୍ଦ ଲେଖ—

ସ୍ମୃତି, ସ୍ୱଳ୍ପାୟୁ, ଅଜ୍ଞାତ, ଦାତା, ବିଶାଳ, ଅନଶ୍ୱର ।

# କୁଟୀର ଚିରନ୍ତନ

ଧୂଳି ହୋଇ ମିଶିଛ୍ନ ମାଟିରେ
କେତେ କେତେ ସମ୍ରାଟର ଘର
ସହସ୍ରର ସମାଗମ ଯହିଁ
ସେଥି ଆଜି ଚରେ ବନେଚର ।
କିନ୍ତୁ ଦୂରେ ଦରିଦ୍ର ପଲ୍ଲୀରେ
କୁଟୀମାନ ହୋଇଅଛି ଛିଡ଼ା
ସାମ୍ରାଜ୍ୟର ଉତ୍‌ଥାନ ପତନେ
ଚଳିଅଛି ଯହିଁ ନରକ୍ରୀଡ଼ା ।

ପୁଣି କେତେ ଧନୀ, ମାନୀ, ରାଜା
ଆସି ପୁଣି ମିଶିବେ ମାଟିରେ
କାଳେ କାଳେ କିନ୍ତୁ ଥିବ ଚଳି
ନରଲୀଳା ମାଟିର କୁଟୀରେ ।

ଦମ୍ଭୀ, ମାନୀ, ଧନିକ ଆଜିର
ଶେଷ ହେବେ ଯେବେ ରେଣୁ ହୋଇ
ଚଳିଥିବ ଗରୀବ ଧରି କାଖେ
ଚଷାଝିଅ ନଈକୁ ଗାଧୋଇ ।

ଦାମ୍ଭିକର ମାନ, ଅହଙ୍କାର
ଧନିକର ବିତ୍ତ, ଆଡ଼ମ୍ବର
ଧୂଳାଧୂସରିତ ମାଟିର ଧରାରେ
ତାହାସବୁ ଅତି ଅବାନ୍ତର ।

ତେଣୁ ତାର ଘଟେ ବିପର୍ଯ୍ୟସ୍ତ
ପ୍ରାସାଦରେ ଉଠେ ଦୂବଘାସ
କୁଟୀର ତ ମାଟିର କୁଟୁମ୍ବ
ତେଣୁ ତାର ନୁହେଁ ବଂଶ ନାଶ ।

ପ୍ରଶ୍ନ

୧ । "ଧାର୍ମିକର ମାନ, ଅହଙ୍କାର·····ଅତି ଅବାନ୍ତର"—ଏହି ପଦ୍ୟାଂଶଟିର ସରଳାର୍ଥ ଲେଖ ।

୨ । "କୁଟୀର ମାଟିର କୁଟୁମ୍ବ ଅଟେ ।"—କପରି ?

୩ । ଅବାନ୍ତର, ଧାର୍ମିକ, ଦୂର୍ବାବୃତା, ବିପର୍ଯ୍ୟସ୍ତ—ଏ ସମସ୍ତର ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର ।

---

## ବାପୁଜୀ

—୧—

ବାପୁଜୀ ହେ ତୁମେ ଦେଖାଇଥିଲ
କାହିଁ ଯେ ଆମର ମୁକ୍ତି-ପଥ
କୃଷ୍ଣ ହେ ତୁମେ ସାରଥି ହୋଇ
ବାହିଥିଲ ଆମ ସମର-ରଥ ।
ମନ ଯେବେ ମୋହ-ଗ୍ରସ୍ତ
ସତ୍ତ୍ୱ-ସାହସତ୍ରସ୍ତ,
ତୁମେ ଦେଇଥିଲ ଅନଳ ଡାକ
"ଜାଗ ରେ ଜାଗ ରେ ମୁକ୍ତିବ୍ରତ ।"
ବାପୁଜୀ ହେ ତୁମେ ଦେଖାଇଥିଲ
କାହିଁ ଯେ ଆମର ମୁକ୍ତି-ପଥ ।

—୨—

ହିଂସା-ବିହ୍ୱଳ ଜନତା ଯେବେ
ଏକ ଆନ ବୁକେ ଗରଳ ଭରେ,
ବିଜୟୀର ଭରା ତୃପ୍ତି ଯେମନ
ରୁଧିର-ସାଗରେ ସ୍ନାହାନ କରେ ।
ବୁଦ୍ଧ ହେ ଆମ ବୁଦ୍ଧ
ତପଲୋକେ ତୁମେ ଶୁଦ୍ଧ,
ପରାଧୀନ ଜନେ ମୁକ୍ତ କଲ
ଅହିଂସାର ସେ ସଂଗ୍ରାମରେ;
ହିଂସା-ବିହ୍ୱଳ ଜନତା ଯେବେ
ଏକ ଆନ ବୁକେ ଗରଳ ଭରେ ।

—୩—

ଏ ଦେଶ-ମଣିଷ କପଟ ଭକ୍ତ
ତୁମର ଦାନ ଯେ ପାରିଲା ଭୁଲି
କପଟ ଭକ୍ତ ସେ ହତ୍ୟାରକ
ତୁମର ଛାତିକି ମାରିଲା ଗୁଳି ?
ଖ୍ରୀଷ୍ଟ ହେ ତୁମେ ଖ୍ରୀଷ୍ଟ
ଘାତକର ଶୁହଁ ଇଷ୍ଟ,
ଜୀବନେ ମରଣେ ସେଇଥି ପାଇଁ
କ୍ଷମାର ସାଗର ରହିଚ ପୂରି,
କପଟ ଭକ୍ତ ସେ ହତ୍ୟାରକ
ତୁମର ଛାତିକି ମାରିଲା ଗୁଳି ?

—୪—

କୃଷ୍ଣ ଆମର, ବୁଦ୍ଧ ଆମର,
ଖ୍ରୀଷ୍ଟ ଆମର ବାପୁଜୀ ତୁମେ
ମୃତ୍ୟୁଞ୍ଜୟୀ ଜୀବନ ତୁମର
ଅଜର ଅମର ମର୍ତ୍ତ୍ୟ ଭୂମେ ।
ଜନ ଯେବେ ଅନାସକ୍ତ
ଅନ୍ୟାୟେ ହେବେ ମତ୍ତ,
ଜାଗିବ, ଜାଗିବ, ଜାଗିବ ତୁମେ
ଆଜ ଯେ ଶୋଇଚ ମରଣ-ଘୁମେ;
କୃଷ୍ଣ ଆମର, ବୁଦ୍ଧ ଆମର,
ଖ୍ରୀଷ୍ଟ ଆମର, ବାପୁଜୀ ତୁମେ ।

## ପ୍ରଶ୍ନ

୧ । ବାପୁଜୀଙ୍କୁ କାହିଁକି ଆମର କୃଷ୍ଣ, ବୁଦ୍ଧ ଓ ଖ୍ରୀଷ୍ଟ ବୋଲି କୁହାଯାଇଛି ?

୨ । କବିତାଟିର ସାରାଂଶ ନିଜ ଭାଷାରେ ଲେଖ ।

୩ । ସରଳାର୍ଥ ଲେଖ—

(କ) ଜୀବନେ ମରଣେ ସେଇଥି ପାଇଁ
କ୍ଷମାର ସାଗର ରହିଚ ପୂରି ।

(ଖ) ମୃତ୍ୟୁଞ୍ଜୟୀ ଜୀବନ ତୁମର
ଅଜର ଅମର ମର୍ତ୍ତ୍ୟ ଭୂମେ ।

୪ । ସମାସବ୍ୟାଖ୍ୟା ଲେଖ—

ମୁକ୍ତିବ୍ରତ, ସମରରଥ, ସତ୍ତ୍ୱ-ସାହସସ୍ୱସ୍ତ, ହନ୍ତାରକ, ମୃତ୍ୟୁଞ୍ଜୟୀ ।

# ପ୍ରତିଶୋଧ

— ୧ —

ପୁତ୍ରଶୋକର ଗଭୀର କାତର ବେଦନା ଭରେ
ପାଣ୍ଡବବଧୂ କାନ୍ଦଇ ବସି ଶିବିର କୋଳେ ।
ଧରଣୀତଳେ ଲୋଟି ଧୂଳିଧୂସରିତ ହୋଇଛି ତନୁ,
ଲୋଚନର ଝର ଫିଟି ପଡ଼ୁଅଛି ନୟନାମ୍ବୁ ।
ମୁକୁଳ ପଡ଼ିଛି ବେଣୀ ସହାର ବନ୍ଧନ ସମ
ଅଲୁଳ ପଡ଼ିଛି ତନୁ ଅଙ୍ଗର ବେଶ ଭୂଷଣ ।
ଯେ ଯେତେ କହଇ ଆଶ୍ୱାସନାର ବଚନ ବାଣୀ
ନୟନର ଜଳ ଅଶ୍ରୁ ସଲିଳେ ଯାଉଛି ଭାସି ।

— ୨ —

"ଅଶ୍ୱତ୍ଥାମାକୁ ବାନ୍ଧି ଆଣିଛି, ଏଇ ଗୋ ରାଣି",
ଅର୍ଜୁନ ଆସି ଶିବିରଭିତରେ ଭାଷିଲେ ବାଣି,
"ଗଭୀର ନିଶାରେ ସୁପ୍ତ ଶିବିରେ ଏ କାଳଦୂତ
ପାଷାଣ ହୃଦୟେ ବଧିଛି ତୁମର ପଞ୍ଚସୁତ ।
ପ୍ରତିଶୋଧ ପାଇଁ କରିବି ଏହାର ଶିରଚ୍ଛେଦ,
ତୁଟିବ ନାହିଁ କି ତହିଁରେ ତୁମର ମନର ଖେଦ ?"
ବସ୍ତ୍ରଭିତରେ ଅନାଇ ରହିଲେ ବଧୂର ବାମା
ସ୍ୱପନଶିଶୁ ସମ ବନ୍ଧି ପୁରବେ ଅଶ୍ୱତ୍ଥାମା ।

— ୩ —

ଦେଖି ଦେଖି ଆହା ଆତୁର ଆତୁର ଆକୁଳ ମାର
ଉଛୁଳି ପଡ଼ିଲା ହୃଦୟ ଫାଟାଇ ଦ୍ରୌପଦୀର ।

ବସ୍ତ୍ରପୁଟରେ ଅର୍ଜ୍ଜୁନ ଯାଇ ଘୋଷିଲେ ପୁଣି
"ଆଦେଶ ନ ଦେଇ କାହିଁପାଇଁ ଦେବ, ରହିଛ ତୁନି ?
ଦେଖିପାରୁ ନାହିଁ ଶୋଣିତ ମୋ ବାଣ ତୃଷିତ ପ୍ରାଣେ
ଅନାଇ ରହିଛୁ ଅଶ୍ୱତ୍ଥାମାର ରକ୍ତପାନେ ।"
ବସ୍ତ୍ରପୁଟରେ ଅନାଇ ରହିଲେ ବଧୂବର ବାମା ।
ଯୂପପଶୁ ସମ ବନ୍ଧ ପୁରତେ ଅଶ୍ୱତ୍ଥାମା ।

—୪—

"ରକ୍ତରେ ମୁଁ ଯେ ବେଣୀସଂହାର କରାଇଥିଲି
ଭୁଲିଯାଇ ନାହିଁ ନାରୀହୃଦର ମୁଁ ଉଦାର ଶିକ୍ଷା ।
ଘାତକର ବଧେ ଡାଉ ମୋହର ନୁହଇ ରାଜ
ତୃପ୍ତି ଲଭିବ କି ଜନନୀ ହୃଦୟ ପାଷାଣ ସାଜ ?
ସ୍ୱାମୀନାଥ ଥରେ ଗୌତମୀ ମା'ର ସଜଳ ଆଖି
ପୁଅ ହରାଇ ମୋହ ପରି ହେବେ କି ନିରମାଖି ?
ଅଶ୍ୱତ୍ଥାମାକୁ ଦେଖିଲେ ମୋହର ବଢ଼ୁଛି ବ୍ୟଥା
ମୁକ୍ତ ତାହାକୁ ଦିଅ ଚଞ୍ଚଳ, କାଟନା ମଥା ।"

## ପ୍ରଶ୍ନ

୧ । କବିତାଟିର ସାରାଂଶ ନିଜ ଭାଷାରେ ଲେଖ ।
୨ । ଦ୍ରୌପଦୀ ନିଜ ଜନନୀ-ପ୍ରାଣର ଉଦାରତାର ପରିଚୟ କିପରି ପ୍ରଦାନ କଲେ ?
୩ । ସରଳ ବ୍ୟାଖ୍ୟା ଲେଖ—
ରକ୍ତରେ ମୁଁ ଯେ ବେଣୀସଂହାର······ହୃଦୟ ପାଷାଣ ସାଜ ?
୪ । ବିପରୀତ ଶବ୍ଦ ଲେଖ—
ଉଦାର, ଗମ୍ଭୀର, ସୁପ୍ତ, ବନ୍ଧ, ତୃପ୍ତି ।

# ପଲ୍ଲୀମାୟା

ଦୂର ଏ ପରବାସେ
ମୁଗ୍ଧ ମୁହିଁ ଝୁହିଁଛି ଏଇ
ସଞ୍ଜ ଶଶୀ-ହାସେ ।

ଶୀତଳ ଦେଖି କଅଁଳ ରାତି
ମେଲାଇ ଧରା ମୁକୁଳା ଛାତି
ଅବଶ ହୋଇ ପଡ଼ିଛି ଶୋଇ
ଅନାଇ ନୀଳାକାଶେ ।

କୁଆଡ଼େ ନାହିଁ କେହି,
ସହସା ଗାଆଁ ମୂର୍ଚ୍ଛନା ମୋ
ଶ୍ରବଣେ ଉଠେ ରେଇଁ ।

ମର୍ମରିତ ବନାନ୍ତ-ଗାନ
କୁଳାୟ-ଭରା ବିହଙ୍ଗ ତାନ
ଦେଖେ ମୁଁ ତାର ଶ୍ରୀ ସମ୍ଭାର
ମନ-ନୟନ ଫେଇ ।

ପଡ଼ଇ ମୋର ମନେ,
ଖେଦେଇ କଥା ବକଶୀବଣି
ଗାଆଁର ବିଲ ବନେ ।

ଏତିକି ବେଳେ ପଲ୍ଲୀବାଳୀ
ସବୁରେ ଭରି ଅର୍ଘ୍ୟଥାଳୀ
ସଞ୍ଜବେଳ ହେବେଣି ମେଳ
ପୂଜାର ଆୟୋଜନେ

ବାଗର ବାଡ଼େ ବାଡ଼େ
ଜହ୍ନିଫୁଲ                    ଅନାଉଥିବ
ବଧ୍ଲ ମୂହଁ ଆଡ଼େ ।
ଖେଦୁଅ ଖଗ                    କାନ୍ଦୁଏ ପକ୍ଷୀ
ଜାବନି ଚାର                    ନେବଣି ଶୋଷି
ଦେବଣି ଜାଣ—                    ପଦ୍ମିଲ ଗ୍ରାସ
ନଈର ଦାଡ଼େ ଦାଡ଼େ ।

ସୁନୀଳ ସର-କୋଳେ
କୁଆଁ ଘା କରିଁ                    ବଳସୁଥିବ
ମୃଦୁଳ ଗୀତ ଦୋଳେ
ରାଣୀଫୁଲଆ                    ଜୋଛନା ଛଳେ
ଆପଣା ମୁଖେ                    ବିମଳ ଜଳେ
ଚଟରୁ ଚକୁ                    ଥିବଟି ଗୁହ୍ନିଁ
କଜଳ-କଳା ଡୋଳେ ।
ନ ଥିବ ଆଉ ବଡ଼ି
କଶୋର ଚଳ                    କେଦାରୁ ବାହ୍ରସ
ଲଗାଇବଣି ଧଡ଼ି ।

ଖେତର ଦଶା                    ଗୃହିଣୀ ପାଶେ
ବଖାଣୁଥିବ                    କଷାଣ ବାସେ
ଥାଳରେ ଖାଉଁ                    ଶୀଚିଲ ଜାଉ
ଲଗାଇ ଲୁଣ ବଡ଼ି ।
ପ୍ରବାସେ ରଚେଁ ବାସ,
ଗାଆଁର ମାଟି                    ମାନସ ଟାଣେ
ବର୍ଷ ବାର ମାସ ।

ଗାଆଁର ନନ୍ଦ, କେଦାର, ବନ
ସ୍ମୃତିରେ ମୋର ସାଇତା ଧନ
ଜୀବନ ଚହ୍ନି ଅଛୁ ଟିରେ ରହି
ଅଛୁ ରେ ସୁଖହାସ
ପ୍ରବାସେ ରଚେଁ ବାସ ।

## ପ୍ରଶ୍ନ

୧ । 'ପଲ୍ଲୀମାୟା' କବିତାଟିର ସାରାଂଶ ନିଜ ଭାଷାରେ ଲେଖ ।

୨ । ପଲ୍ଲୀଜୀବନ ପ୍ରତି କବିପ୍ରାଣରେ ମାୟା ସୃଷ୍ଟିହେବାର କାରଣ କଅଣ ?

୩ । ପ୍ରସଙ୍ଗ ନିର୍ଦ୍ଦେଶ କରି ସରଳାର୍ଥ ଲେଖ—

(କ) ରାଣୀଫୁଲିଆ ଜୋଛନା ଚଳେ······ଜଳିଲ ଜଳା ଡୋଳେ ।

(ଖ) ଭୋଦୁଅ ଖରା······ନଈର ଦାନ୍ତେ ଦାନ୍ତେ ।

୪ । ବାକ୍ୟରେ ବ୍ୟବହାର କର—
ମୂର୍ଚ୍ଛନା, ମୁକୁଳା, ସମ୍ଭାର, ଗୀତ, ପ୍ରବାସ, ମର୍ମିର ।

---

# ସ୍ୱାଧୀନ ଦେଶର ଛାତ୍ର

ସ୍ୱାଧୀନ ଦେଶର ଯୁବ ଆମେ ରେ
ସ୍ୱାଧୀନ ଦେଶର ସନ୍ତାନ,
ଲକ୍ଷ କେଶରୀ-ବିକ୍ରମ ଆମ
ବକ୍ଷେ ଆଣଇ କମ୍ପନ ।

କର୍ମର ପଥେ କର୍ମୀ ହେବୁ ରେ
ଉତ୍ସାହେ ହୋଇ ଜାଗ୍ରତ,
ବିଘ୍ନ ସକଳ ପଦେ ଦଳଦେଇ
ଲଙ୍ଘିବୁ ବନ ପର୍ବତ ।
ସବୁଜ ଶସ୍ୟେ ସଜାଇବୁ ଦେଶ
କରେ କରି ଭୂମି କର୍ଷଣ,
ଅରିକୁ କରିବୁ ବାନ୍ଧବ ରୂପେ
କରି ପ୍ରେମଧାର ବର୍ଷଣ ।
ମନ୍ଥନ କରି ଗ୍ରନ୍ଥ-ସାଗର
ହୋଇବୁ ରେ ଆମେ ପଣ୍ଡିତ,
ଦେଶ ବିଦେଶରେ ଅରଜି କୀର୍ତ୍ତି
ଗୌରବେ ହେବୁ ମଣ୍ଡିତ ।
କବି ହୋଇ ଆମେ ରଚିବୁ କବିତା
ବିଶ୍ୱ-ମାନସ-ରଞ୍ଜନ,
ଅହିଂସା-ଉଦାର-ସଙ୍ଗୀତ ଗାଇ
କରିବୁ ବିବାଦ ଭଞ୍ଜନ ।
ବିଜ୍ଞାନୀ ହୋଇ କଳାକଉଶଳ
ଦେଖାଇବୁ ଆମେ ହର୍ଷରେ
ନୀରସ ପାଷାଣ ପାଇବ ପରାଣ
ଆମରି ଅଙ୍ଗୁଳି ସ୍ପର୍ଶରେ
ଧର୍ମର ପଥେ ଧାର୍ମିକ ହେବୁ
ପୂଜି ଯୀଶୁ, ବୁଦ୍ଧ, ଶଙ୍କର,
ଅଛନ୍ତି ଯେତେ ରେ ଦଳିତ ପୀଡ଼ିତ
ହୋଇବୁ ସେବକ ତାଙ୍କର ।

ବିପୁଳ ଜଗତେ ବିଚରିବୁ ଆମେ
ଶାନ୍ତି-ମୈତ୍ରୀ-କାଞ୍ଚନ,
ସ୍ୱାଧୀନ ଦେଶର ଯୁବକ ଆମେ ରେ
ସ୍ୱାଧୀନ ଦେଶର ସନ୍ତାନ ।

## ପ୍ରଶ୍ନ

୧ । ସ୍ୱାଧୀନ ଦେଶର ଯୁବକ ଭାବରେ ତୁମେ କଅଣ କରିବାକୁ ଇଚ୍ଛା କର ?

୨ । "ବିପୁଳ ଜଗତେ ବିଚରିବୁ ଆମେ
ଶାନ୍ତି-ମୈତ୍ରୀ-କାଞ୍ଚନ ।"
—ଏହାର ଅର୍ଥ ସରଳ ଭାଷାରେ ବୁଝାଇଦିଅ ।

୩ । ବିଶେଷ ପଦରେ ପରିଣତ କର—
କରିବା, ଅର୍ଜିବା, ବିଚରିବା, ଗାଇବା, ଲଙ୍ଘିବା, ଜିଣିବା ।

୪ । ସମାସବ୍ୟାଖ୍ୟା ଲେଖ—
ଶାନ୍ତି-ମୈତ୍ରୀ-କାଞ୍ଚନ, ସିନ୍ଧୁ-ସାଗର, ବିଶ୍ୱ-ମାନସ-ରଞ୍ଜନ ।



ବ୍ରହ୍ମପୁର ଗୋପୀନାଥ ପ୍ରେସରେ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସଙ୍କଦ୍ୱାରା ମୁଦ୍ରିତ, ୧୯୬୭

